# ସାହିତ୍ୟିକ ସମାଲୋଚନା



ଓଡ଼ିଶା-ପବ୍ଲିଶିଂ ହାଉସ୍

# ସାହିତ୍ୟିକ ସମାଲୋଚନା

ଲେଖକ:—

ଶ୍ରୀ କାଳିଆ ପାଣିଗ୍ରାହୀ ବି. ଏ. ଏଲ୍. ଟି (ମାନ୍ଦ୍ରାଜ)

ପ୍ରଥମ ମୁଦ୍ରଣ

୧୯୪୭

ପ୍ରକାଶକ:—

ଓଡ଼ିଶା ପବ୍ଲିଶିଂ ହାଉସ୍

ବ୍ରହ୍ମପୁର : କଟକ : ସମ୍ବଲପୁର : ଜୟପୁର

ମୂଲ୍ୟ ୪ ୧ ।   [illegible]

# ସୂଚୀ

# ସାହିତ୍ୟିକ ସମାଲୋଚନା

ଯଯାତି କେଶରୀ

ଉତ୍କଳ ଇତିହାସର ଗବେଷଣା ରାଧାନାଥଙ୍କ ସମୟରେ ସେତେ ଆଲୋଡ଼ିତ କରାଯାଇ ନଥିଲା। ତେଣୁ ତତ୍ ସମ୍ବନ୍ଧେ ପରବର୍ତ୍ତୀ ଅନେକ ଉଦ୍‌ଘାଟିତ ତଥ୍ୟ ତାଙ୍କର ଅଜଣା ଥିଲା। ସେ କୌଣସି କାବ୍ୟର କଥାବସ୍ତୁକୁ ଖାଣ୍ଟି ଇତିହାସ ଉପରେ କେବଳ ନ୍ୟସ୍ତ ନକରି କଳ୍ପନାର ଆଶ୍ରୟ ନେଇଥିଲେ। ପୁଣି ଅନେକ ସମୟରେ ସେ ନିଜର ଉର୍ବର କଳ୍ପନାର ବ୍ୟବହାର କରୁଥିଲେ। ରାଧାନାଥ କବି ହିସାବରେ ଅତି କଳ୍ପନାପ୍ରିୟ, ଏହା ତାଙ୍କର କାବ୍ୟନିଚୟରୁ ଜଣାଯାଏ। ସେ ମହେନ୍ଦ୍ର ଉପରକୁ ଯିବାର ସୁବିଧା ପାଇ ନଥିଲେ ସୁଦ୍ଧା ମହେନ୍ଦ୍ର କାବ୍ୟ ଲେଖିବା ଚେଷ୍ଟାରୁ ବିରତ ହୋଇ ନଥିଲେ। ସେ ତତ୍ ସମ୍ବନ୍ଧେ ଲୋକ ମୁଖରୁ ଯାହା ଶୁଣିଲେ ଓ ଦୂରରେ ଯାହା ଦେଖିଲେ ସେହି ଅବୟବକୁ କଳ୍ପନା ବଳରେ ଖାଣ୍ଟି ସୁବର୍ଣ୍ଣ କରିବାକୁ ସମର୍ଥ ହେଲେ। ସେ ହେତୁ—

"କଳ୍ପନା ଯୋଗାଇ ଦେବାରୁ ବାହନ
ସେ ବାହନେ କଲି ଚିତ୍ତ ଆରୋହଣ ।"
"ଦୟା ବହି ସେହି କଳ୍ପନା ସୁନ୍ଦରୀ,
ଗିରି ମାର୍ଗେ ମୋର ହେଲେ ସହଚରୀ ।"

ଜନପ୍ରବାଦ ଓ ଅନୁମାନକୁ କେବଳ ମୂଳକରି ସେ ମହେନ୍ଦ୍ର କାବ୍ୟ ଲେଖିଛନ୍ତି । ମନୁଷ୍ୟର କଳ୍ପନା ଶୂନ୍ୟ ଉପରେ ନ୍ୟସ୍ତ ନୁହେଁ । କଳ୍ପନାର ଭିତ୍ତି ତାହାର ସଂଗୃହୀତ ପୂର୍ବଜ୍ଞାନ । ରାଧାନାଥଙ୍କର ସାହିତ୍ୟିକ, ଐତିହାସିକ ଓ ସାଧାରଣଜ୍ଞାନ ଅନ୍ୟାନ୍ୟଙ୍କ ତୁଳନାରେ ଅତିଶୟ ଉଚ୍ଚ । ସେ ଜଣେ ଉଚ୍ଚଧରଣର ପଣ୍ଡିତ ଓ ସାହିତ୍ୟର ଗମ୍ଭୀର ରସରେ ସବୁବେଳେ ମୁଗ୍ଧ । ସଂସ୍କୃତ, ପ୍ରାଚୀନ ଓଡ଼ିଆ ଓ ଇଂରାଜୀ ସାହିତ୍ୟରେ ତାଙ୍କର ଅଗାଧ ଅନୁଶୀଳନ ଥିଲା । ଭୂଦେବ ମୁଖୋପାଧ୍ୟାୟ ରାଧାନାଥଙ୍କୁ "ନାନା ଭାଷା ବିଭୂଷିତ, ନାନା ଶାସ୍ତ୍ର ସୁପଣ୍ଡିତ" ବୋଲି ଯାହା କହିଅଛନ୍ତି ସେଥିରେ ଅଯଥା ସ୍ତୁତିର କୌଣସି ସଂଶୟ ରହିବା ଅନାବଶ୍ୟକ । ରାଧାନାଥ ତାଙ୍କ ପ୍ରଭୂତ ଜ୍ଞାନକୁ ଓଡ଼ିଆ ଭାଷାର ଉନ୍ନତି ବିଧାନରେ ବ୍ୟୟ କରି ଉତ୍କଳ ସାହିତ୍ୟ ଇତିହାସରେ ଗୋଟିଏ ନୂତନ ଯୁଗର ପ୍ରବର୍ତ୍ତନ କରିପାରିଥିଲେ ।

ଯଯାତି ଉତ୍କଳୀୟ ରାଜା ଜନ୍ମେଜୟଙ୍କର ପୁତ୍ର । ସେ କେଶରୀ ବଂଶର ପ୍ରତିଷ୍ଠାତା ନୁହନ୍ତି । କେଶରୀ ବଂଶର ଅନ୍ୟ ନାମ ସୋମବଂଶ । ପ୍ରଥମେ ସୋମବଂଶୀ ରାଜାମାନେ ଉତ୍ତର କୋଶଳରେ ରାଜତ୍ୱ କରୁଥିଲେ । ପରେ ଉତ୍କଳ ସେମାନଙ୍କର ଶାସନାଧୀନ ହେଲା । ଏହି ସବୁ ପରବର୍ତ୍ତୀ ଉଦ୍ଭାବିତ ଐତିହାସିକ ତଥ୍ୟ ରାଧାନାଥଙ୍କ ସମୟରେ ଅଜ୍ଞାତ ଥିଲା । ତେଣୁ ସେ ଉତ୍କଳର କେଶରୀ ବଂଶ ପ୍ରତିଷ୍ଠା

ଉପରେ ଗୋଟିଏ କାଳ୍ପନିକ କାବ୍ୟସୌଧ ଉତ୍ତୋଳନ କରିବାକୁ ଚତୁର କରି ଯଥାର୍ଥ ନୂତନ କାବ୍ୟ ଲେଖିବାକୁ ଲାଗିଲେ । ରାଧାନାଥ ତଥା ତତ୍କାଳୀନ ସାହିତ୍ୟିକମାନଙ୍କର ଜୀବନୀ ଆଲୋଚନା କଲେ ଜଣାଯାଏ ସେମାନେ ଜାତିର ଇତିହାସର ଗୋଟିଏ ସନ୍ଧିକ୍ଷଣରେ ରହି ନିଜର କର୍ତ୍ତବ୍ୟ ସ୍ଥିର କରିଥିଲେ । ମଧ୍ୟଯୁଗର ଭାବପ୍ରଧାନ ଓ ଆଧୁନିକ ଯୁଗର ଆବିର୍ଭାବ, ପୁରାତନ ଶିକ୍ଷାପଦ୍ଧତି, ସାହିତ୍ୟାଦର୍ଶ, ରୀତି ନୀତି, ଆଚାର ବ୍ୟବହାରର କ୍ରମିକ ପରିବର୍ତ୍ତନ ଓ ପାଶ୍ଚାତ୍ୟ ବିଶେଷତଃ ଇଂରେଜୀ ଶିକ୍ଷା, ସାହିତ୍ୟ ଓ ସଭ୍ୟତାର ଦେଶବ୍ୟାପୀ ପ୍ରସାରଣ ପ୍ରଭୃତି ଦ୍ୱାରା ଉତ୍କଳରେ ମଧ୍ୟଯୁଗର ଲୋପ ସମାହିତ ହୋଇ ଆଧୁନିକ ଯୁଗ ପ୍ରକାଶିତ ହେଲା । ରାଧାନାଥ ଏହି ସନ୍ଧିସ୍ଥଳରେ ଦଣ୍ଡାୟମାନ ରହି ଅତୀତର ସଂସ୍କୃତିକୁ ଆଧୁନିକତାର ମୋହରେ ତ୍ୟାଗ କରିବାକୁ ପ୍ରସ୍ତୁତ ନଥିଲେ ସତ୍ୟ ମାତ୍ର ପାଶ୍ଚାତ୍ୟାଲୋକର ଅବାଧ ପ୍ରବେଶରେ ତାଙ୍କର କୌଣସି ଆପତ୍ତି ନଥିଲା, ବରଂ ସେ ସେହି ଆଲୋକକୁ ଆବାହନ କରିବାକୁ ସର୍ବଦା ଉଦ୍‌ଗ୍ରୀବ ଥିଲେ । "ଉପେନ୍ଦ୍ର ଭଞ୍ଜଙ୍କର ସେହି କବିତା ସୁରସରି, ସେହି କବିତା ପୀୟୂଷଧାର" କାଳିଦାସଙ୍କର ପ୍ରତିଭା ମାଧୁର୍ଯ୍ୟ ସଙ୍ଗେ ସେକ୍ସପିୟରଙ୍କ ନାଟ୍ୟକଳା ସମ୍ମିଶ୍ରଣର ପ୍ରଭାବ ରାଧାନାଥଙ୍କ ପ୍ରଧାନ କାବ୍ୟଗୁଡ଼ିକରେ ଦ୍ରଷ୍ଟବ୍ୟ । ମାତ୍ର ସେ ପୁରାତନ ମନୀଷୀମାନଙ୍କୁ ଅନୁସରଣ କରି ନିଜର, ନିଜ ଯୁଗର ପୁଣି ନିଜ ଜାତିର ସଂସ୍କୃତିର କୌଣସି ଅପଚୟ ଘଟାଇ ନାହାନ୍ତି । ତାଙ୍କ କାବ୍ୟ-କୁସୁମରେ ଅନୁକରଣର ଅପ୍ରାକୃତିକତା ଦେଖାଯାଉ ନଥିଲା । ତାଙ୍କର ବର୍ଣ୍ଣନାଭଙ୍ଗୀ, ଚରିତ୍ର ଚିତ୍ରଣ ଓ କଥାଧାରା ସମ୍ପୂର୍ଣ୍ଣ ଭାବେ ତାଙ୍କର ମୌଳିକ ସମ୍ପଦ ହୋଇ ରହିଅଛି । ଉତ୍କଳ ଇତିହାସର ପ୍ରଧାନ ଦୁଇଟି ବଂଶ ଯଥା—ଗଙ୍ଗ ଓ କେଶରୀ ବଂଶର

ପ୍ରତିଷ୍ଠାନକୁ ଅଧିକ ଗୌରବମୟ ଓ ପବିତ୍ର କରିବା ଉଦ୍ଦେଶ୍ୟରେ କବିବର ଦୈବୀ ଘଟଣା କଳ୍ପନା କରି ଜଣେ ଜଣେ ଦେବୀଙ୍କର ଅନ୍ତଃପୁର ଗ୍ରହଣ କରିଅଛନ୍ତି । ଚୋଳଗଙ୍ଗଙ୍କର ଉତ୍କଳ ବିଜୟ ମଧ୍ୟ-ଯୁଗର ଗୋଟିଏ ରାଜନୈତିକ ଘଟଣା । ସେ ତତ୍କାଳୀନ ସାମରିକ ଶକ୍ତି ସାହାଯ୍ୟରେ ଉତ୍କଳ ଦେଶକୁ ଜିଣି ସେଠାର ରାଜଗାଦିରେ ସ୍ୱବଂଶର ପ୍ରତିଷ୍ଠା କରାଇଥିଲେ । ଏହି ରାଜନୈତିକ ବା ଐତିହାସିକ ଘଟଣାଟିକୁ ଅଧିକ ଚିତ୍ତାକର୍ଷକ କରାଯାଇଛି, ଚୋଳଗଙ୍ଗଙ୍କୁ ବୈଷ୍ଣବ ଧର୍ମର ଅଗ୍ରଦୂତ କରି । ଗଙ୍ଗାଦେବୀଙ୍କର ସନ୍ଦେଶ ଚୋଳ-ଗଙ୍ଗଙ୍କୁ କେବଳ ଯୁଦ୍ଧବୀର ନକରି ଧର୍ମବୀର ମଧ୍ୟ କରିଥିଲା । ଏହା ଦେବୀଙ୍କର ନିମ୍ନୋଦ୍ଧୃତ ଉକ୍ତିରୁ ସ୍ପଷ୍ଟ ହୁଏ—

"ସପତ୍ନୀର ପୂଜା ଉଠାଇବା ଆଶେ,
ଅଣିଲି ବାଳୁତ ଚୋଡଙ୍ଗ ଏ ପ୍ରବାସେ ।"

× × ×

ଧର୍ମବୀର ସନାଧର୍ମ ସଂସ୍ଥାପନ
କରିବାକୁ ଅନ୍ୟେ ନୃପେନ୍ଦ୍ର ଭାଜନ ।"

ଉତ୍କଳରେ ବୈଷ୍ଣବ ଧର୍ମର ପୂର୍ବବର୍ତ୍ତୀ ଧର୍ମ ଥିଲା ଶକ୍ତି ଓ ଶିବପୂଜା । ଭୌମ ନରପତିମାନଙ୍କର ବୌଦ୍ଧଧର୍ମ କାଳକ୍ରମେ ତାନ୍ତ୍ରିକତାରେ ପରିଣତ ହୋଇ ବିରଜା ଆରାଧନାରେ ପୂର୍ଣ୍ଣ ହୋଇଥିବା ଦୃଢ଼ ଯୁକ୍ତିସଙ୍ଗତ । କେଶରୀ ରାଜାମାନେ ଶୈବ ଥିଲେ ପୁଣି ସ୍ୱୟଂ ଯଯାତି ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରର ଆରମ୍ଭକର୍ତ୍ତା । ଏହି ସୋମବଂଶୀ ରାଜାମାନଙ୍କର ଅନ୍ୟ ନାମ ବା ଉପାଧି କାହିଁକି ଓ କିପରି କେଶରୀ ହେଲା ଜାଣିବା ପାଇଁ ଇତିହାସରୁ ଅଦ୍ୟାପି କିଛି ଉପାଦାନ ମିଳିନାହିଁ । ତେଣୁ ଏଥିସମ୍ବନ୍ଧରେ ରାଧାନାଥ ତାଙ୍କର ମଧୁର କଳ୍ପନାକୁ ଚଳାଇ ବିରଜା ଦେବୀଙ୍କ କେଶରୀ ସମ୍ଭୂତ

ଯଯାତିଙ୍କ ବଂଶର ସମ୍ବନ୍ଧ ରକ୍ଷିଅଛନ୍ତି । [illegible] ରାଜା ଯଯାତିଙ୍କ ମାତାଙ୍କ ନାମ ମଧ୍ୟ ବଦଳିଛି । ବୈତରଣୀ ତୀର୍ଥସ୍ଥାନୀଙ୍କୁ ରାଧାନାଥ ଯଯାତିଙ୍କ ମାତା କରି ନଥିଲେ ପୁଣି ତାଙ୍କୁ ରାଜକୁମାରଙ୍କର ପାଳୟିତ୍ରୀ ରୂପେ ରଖି କାବ୍ୟର ନାୟକଙ୍କୁ ମନୁଷ୍ୟ ଅପେକ୍ଷା ଉଚ୍ଚତର ସ୍ଥାନରେ ବସାଇଅଛନ୍ତି —

"ଏ ବୀର କିଶୋର ଅଜଣା ହେଲେହେଁ
ନୁହନ୍ତି ପ୍ରାକୃତ ଜନ"

ଦେବୀ ଘଟଣାର ଅଂଶ ନେଇ କାବ୍ୟରେ ଥିବା ଅଳୌକିକ କଳ୍ପନାକୁ ମଧ୍ୟ ଅନେକ ଦୂର ହ୍ରାସ କରାଯାଇଅଛି । ସ୍ୱପ୍ନରେ ବିରଜା ଦେବୀ ଉତ୍କଳ ଧାତ୍ରୀଙ୍କୁ ଯାହା କହିଅଛନ୍ତି ତାହା ରାଧାନାଥଙ୍କର ସ୍ୱ-ସମ୍ମତି । କାହାର ଅନୁକରଣ କରି ସେ ଏହି ସ୍ୱପ୍ନ ବୃତ୍ତାନ୍ତର ଅବତାରଣା କରିନାହାନ୍ତି । କେଶରୀ ବଂଶର ରାଜତ୍ୱ କାଳରେ ଉତ୍କଳର ଗୌରବ-ରବିକୁ ଦେବୀଙ୍କର ଭବିଷ୍ୟତ ବାଣୀ ରୂପେ ପ୍ରକାଶ କରି କବିବର ଇତିହାସ, ସାହିତ୍ୟ ଓ ଧର୍ମକୁ ଏକ ଅଭିନବ ରୂପ ପ୍ରଦାନ କରିଅଛନ୍ତି । କପଟ ରୂପରେ ରାଜାନ୍ତଃପୁରରେ ପ୍ରବେଶ ଲାଭ କରି ଯଯାତି ଯେଉଁ ଜଘନ୍ୟ ଦୋଷରେ ଦୋଷୀ ହୋଇଥିଲେ ତାହାର ଦଣ୍ଡ ସ୍ୱରୂପ ସେ ପାଇଥାନ୍ତେ ମୃତ୍ୟୁ । ମାତ୍ର ଦେବୀ ବରପ୍ରାପ୍ତ ଯଯାତିଙ୍କୁ ରକ୍ଷା କରିଥିଲା ବିରଜାଙ୍କର ଅନୁଗ୍ରହ । ମାନବ ବିଚାରରେ ଯଯାତି କପଟ ପ୍ରେମିକ, ଚୋର ବା ଅନ୍ୟ ଯାହା ବୋଲଯାଇପାରେ ତାହା । ମାତ୍ର ଦୈବ ବିଚାର ତ ଅନ୍ୟ ପ୍ରକାର, ତେଣୁ ରାଜାଙ୍କୁ ସ୍ୱପ୍ନରେ ବିରଜା ଦେବୀ କହିଲେ—

"ମୋର ଇଚ୍ଛାବଳେ ଉତ୍କଳ ମଣ୍ଡଳେ
ଅସିଛନ୍ତି ଯୁବା ରତନ,
ପୁତ୍ର ରୂପେ ପୁଣି ଜାମାତା ରୂପରେ
କର ତୁ ତାଙ୍କୁ ଗ୍ରହଣ ।"

ଏହି ଆଦେଶ ଅମାନ୍ୟ କରିବ ଏପରି ଶକ୍ତି କାହାର ? ଲଳିତା ସହିତ ଅବୈଧ-ପ୍ରେମରେ ପତିତ ହୋଇ ଯେଉଁ ରାଜକୁମାର ମନୁଷ୍ୟ ସମ୍ମୁଖରେ ହୀନ ହେବାର କଥା ସେ ଦେବୀଙ୍କ ମତରେ "ରୂପେ, ଗୁଣେ, କୁଳେ, ଶୀଳେ ସବୁମତେ ଲଳିତାର ଯୋଗ୍ୟ ବର" । ବିଧିର ଏହି ଅପୂର୍ବ ବିଧାନ ଆନ କରିବାର କାହାର ଶକ୍ତି ଅଛି ?

ଉତ୍କଳରେ କେଶରୀ ବଂଶର ସ୍ଥାପନ ବିଧି-ଅଭିପ୍ରେତ । ତାହା ମନୁଷ୍ୟର ଜିଗୀଷା କିମ୍ବା ଶୌର୍ଯ୍ୟବୀର୍ଯ୍ୟସାଧିତ ହେଲା ବୋଲି କହିବା ମହାନ୍ଧ ମନୁଷ୍ୟର ମୂର୍ଖତା ମାତ୍ର । ସେହିପରି ସେହି ବଂଶର ରାଜତ୍ୱ କାଳରେ ଯେଉଁ ସବୁ କୀର୍ତ୍ତି ମୂର୍ତ୍ତି ହୋଇ ଉଠିଲା ସେସବୁ ଦେବୀଙ୍କର ବର ପ୍ରସୂତ, ମନୁଷ୍ୟର କୃତିତ୍ୱ ସମ୍ଭୂତ ନୁହେଁ ।

ଲିଙ୍ଗରାଜ ମନ୍ଦିରର ଶିଳ୍ପକୁ ଶିଳ୍ପୀ ଯେପରି ତାହାର ସୂକ୍ଷ୍ମ କାରୁକାର୍ଯ୍ୟରେ ଶୋଭନ କରି ମଞ୍ଜୁଳ ଦୃଶ୍ୟରେ ପରିଣତ କରିଛି ସେହିପରି କବିବର ଐତିହାସିକ ଘଟଣାଟିକୁ କବିତ୍ୱ ଗୁମ୍ଫନରେ ମନୋହର କରି ପାଠକର ଚିତ୍ତ ଆକର୍ଷଣ କରିଅଛନ୍ତି ।

କେଶରୀ ଶବ୍ଦର ଅର୍ଥକୁ ଠିକ୍ କରିବାକୁ ଯାଇ ସେ ଗୋଟିଏ ନୂତନ ଉପାୟ ଅବଲମ୍ବନ କରିଅଛନ୍ତି । ଦୁର୍ଗାଙ୍କର ବାହନ କେଶରୀ, ବିରଜା ଦେବୀଙ୍କର ଆଶୀର୍ବାଦରୁ ଏହି ବଂଶ ସ୍ଥାପିତ । ସେହି ବଂଶର ସଙ୍କେତ ସ୍ୱରୂପ ତାଙ୍କର ବାହନର ନାମ ଗ୍ରହଣ କରିବା ନିତାନ୍ତ ଯୁକ୍ତିସଙ୍ଗତ ଓ ସ୍ୱାଭାବିକ । ମାତ୍ର ଏତକରେ କାବ୍ୟକାର ତୃପ୍ତି ନୁହନ୍ତି । ସିଂହର ସ୍ଥାନ ଓ କରଣୀ କାବ୍ୟରେ ପ୍ରଥମ ସ୍ଥାନ ଅଧିକାର କରିଅଛି । ମୂଳରୁ ଶେଷଯାଏଁ ସେହି କେଶରୀର ସହାୟତାରେ କାବ୍ୟର ନାୟକ ଯଯାତି ସର୍ବଦା ନିଃଶଙ୍କଚିତ୍ତ ଓ ବିପଦ ନିବାରିତ ।

ଯଯାତି ଯେତେବେଳେ ଲଳିତାଙ୍କ ପ୍ରେମଲବ୍ଧ ଚେଷ୍ଟାରେ ଉଦ୍ୟତ ହୋଇ କପାଳେଶ ଦୁର୍ଗ ଅଭିମୁଖରେ ଯିବାକୁ ପ୍ରସ୍ତୁତ ହେଉତବେଳେ ସେ ଦେବୀଙ୍କ ସ୍ତୁତି କରି କହୁଛନ୍ତି—

"ମାତ ବିଶ୍ୱଧାତ୍ରି        ବିଶ୍ୱଭସ୍ମ ଧାତ୍ରି
ଦିଅ ବର କୃପା କରି,
ତୋର ଏ କେଶରୀ        ହେଉ ସଦା ମୋର
ବିପଦ-କରି-କେଶରୀ ।"

ଉକ୍ତ ଯାଚିଜ୍ଞା ବୃଥା ହୋଇ ନଥିଲା । ଯଯାତିଙ୍କୁ "ସପ୍ତ ଅଶ୍ୱବାର" "ଅସମ ସଂଗ୍ରାମେ" ନିଧନ କରିବେ ବୋଲି ସ୍ଥିର ହେଲା । ସେମାନଙ୍କୁ ରାଜା ଆଦେଶ ଦେଲେ ଯେ ପର ଦିବସ ପ୍ରାତଃକାଳରେ ସେମାନେ ଯାଇ ରଣପ୍ରାଙ୍ଗଣରେ ପ୍ରବେଶ କରିବେ । ନିଶୀଥରେ ଅପୂର୍ବ ଘଟଣା ଘଟିଲା । ସାତଜଣ ଅଶ୍ୱାରୋହୀ ଗୃହରେ ଏକାପରି ସ୍ୱପ୍ନ ଦେଖିଲେ । ତାହା ଦେଖି ସେମାନଙ୍କର ଧୈର୍ଯ୍ୟ ଚ୍ୟୁତ ହେଲା । ସେହି ସମୟରେ ସାତୋଟି ଦନ୍ତାବଳ ଯଯାତିଙ୍କୁ ଗୋଟାକ ପରେ ଗୋଟାଏ ଆକ୍ରମଣ କଲେ । "ଗର୍ଜି ଉଠି ଦେଲା ତାଙ୍କୁ ଆସି ଏକ ଅଦ୍ଭୁତ ଜ୍ୟୋତିଃ - କେଶରୀ ।" ଏହି ସ୍ୱପ୍ନ ଅପେକ୍ଷା ରାଜାଙ୍କର ସ୍ୱପ୍ନ ଅଧିକ ବିସ୍ମୟଜନକ ଓ ଭୀତିପ୍ରଦ । ଅଶ୍ୱାରୋହୀମାନେ ଯେଉଁ କେଶରୀ ଦେଖିଲେ "ରୋଷାନଳକଣା ଉଡ଼ୁଥିଲା କିବା ସେ ସିଂହର ଦୃଷ୍ଟିପାତେ, ତପ୍ତ ଲୌହ ଖଣ୍ଡୁ ସ୍ଫୁଲିଙ୍ଗ ଯେସନେ ଝଡ଼େ ଅୟୋଘନ ଘାତେ ।" ସେମାନେ ସେହି କେଶରୀର ଭୈରବ ରଡ଼ି ଶୁଣି ଅତ୍ୟନ୍ତ ତ୍ରସ୍ତ ହୋଇଥିଲେ ଓ କହିଲେ "ଅଦ୍ୟାପି ସେ ରାବ ସ୍ମରି କ୍ଷଣେ କ୍ଷଣେ ଥରି ଉଠୁଅଛି ଅଙ୍ଗ ।" ହର୍ଯ୍ୟକ୍ଷର ଭୀଷଣ ମୂର୍ତ୍ତି ଦର୍ଶନ ମାତ୍ରେ ଯେତେବେଳେ ବୀରମାନଙ୍କର ଏପରି ଭୀତି ଉପୁଜିଥିଲା, ତାହା ନିଜକୁ ଆକ୍ରମଣ କରିବା ଦେଖି ରାଜା ଅଧିକ

ନସ୍ତ ଓ ଭୟବିହ୍ଵଳ ହେବା ଅସ୍ଵାଭାବିକ ନୁହେଁ । "କୌଶଳରୂପୀ ଦର୍ପଣ" ରାଜାଙ୍କୁ ଆକ୍ରମଣ କରିବାକୁ ଝୁଲି ଝୁଲି ତାଙ୍କପ୍ରତି ଲକ୍ଷ୍ୟ କରିବାକୁ ଲାଗିଲେ । ତାହାର "ବକ୍ର ଖରର" "ସ୍ଫୁରିତ କେଶର" ଓ "ଦୃଷ୍ଟି ରକ୍ତ ଲୋଚନ" ଦେଖି ସେ ମନେ ମନେ ଭୟ କାତର ଚିତ୍ତରେ ଦେବୀଙ୍କୁ ସ୍ମରଣ କରି ତାଙ୍କର ଶରଣାପନ୍ନ ହେଲେ । ସେତେବେଳେ ସିଂହର ବିକଟ ମୂର୍ତ୍ତି ଅଦୃଶ୍ୟ ହେଲା । ସେ ସୌମ୍ୟ ମୂର୍ତ୍ତି ଧାରଣ କଲା । ଦେବୀ ମଧ୍ୟ କେଶରୀର ଶକ୍ତି ସାମର୍ଥ୍ୟ ବର୍ଣ୍ଣନ କରି ରାଜାଙ୍କୁ କହିଲେ—

"ଏହି ଯେ କେଶରୀ ଯା ସ୍ମରଣେ କମ୍ପେ
ବିଶ୍ଵ-ବ୍ରହ୍ମାଣ୍ଡ ଜାଣ,
ନ ଜାଣିଲି କେ—ବାଲି ରୂପେ କରେ
ଯିବାକୁ ସଦା ଉତ୍ତାନ ।
ଏ କେଶରୀ ଥାଉଁ ବୀର କଶୋରର
ବିପଦ—ଭୟ—କେଶରୀ
କାହିଁ ଥାଉଁ, ରକ୍ଷା ନାହିଁଟି ଯେଉଁଠାରେ
ମାନସେ ଦ୍ରୋହ ଆଚରି ।"

ଏଥିରୁ କାବ୍ୟରେ ସିଂହର ସ୍ଥାନ, ଆବଶ୍ୟକତା ଓ ପ୍ରାଧାନ୍ୟ ଅତିଶୟ ସ୍ପଷ୍ଟ ହୋଇଅଛି । ତେଣୁ ଯଯାତି-ସ୍ଥାପିତ ବଂଶର ନାମକରଣ "କେଶରୀ ବଂଶ" ହେବା ଯେପରି ଯୁକ୍ତିଯୁକ୍ତ ସେପରି ଆବଶ୍ୟକ । "କେଶରୀ" ଏକଟି ଇତିହାସ ପୃଷ୍ଠାରୁ କଥାଏ ନେଇ ନିଜ ଉଚ୍ଚ କଳ୍ପନା ବଳରେ ଯେଉଁ ସତ୍ୟ-ଚମତ୍କାରିଣୀ ଗାଥାର ଉପସ୍ଥାପନ କରିଛନ୍ତି ତାହାର ପ୍ରତିଦାନ କୃତଜ୍ଞତା ବ୍ୟତୀତ ଅନ୍ୟ କିଛି ହୋଇ ନପାରେ । ଗଧାନାଥଙ୍କ ତୁଳନାରେ ଏପରି କୃତିତ୍ଵ ନ ଦେଖି ଇତିହାସର ବିଭ୍ରାଟ ହେଲା ବୋଲି ଯେ ଫିଶ୍ଵାଦ କରେ

ସେ ଉପେନ୍ଦ୍ର ଭଞ୍ଜଙ୍କ ଭାଷାରେ ସାହିତ୍ୟ କାନନର ମର୍କଟ ହୋଇ ନାରିକେଳର ରସ ଗ୍ରହଣ କରିବାକୁ ଅସମର୍ଥ । କେଶରୀର କୃତି ଏତିକିରେ ସମାପ୍ତ ନୁହେଁ । ଯେଉଁ ରଙ୍ଗଭୂମିରେ ଯଯାତି ପ୍ରାଣତ୍ୟାଗ କରିଥାନ୍ତେ ତାହା ଶିବାହର ପୂତସ୍ଥଳୀରେ ପରିଣତ ହେଲା । ସ୍ୱଛା ହିରଣ୍ୟ ବର୍ମ ଯଯାତିଙ୍କ କରରେ କୋମାର୍ଦ୍ର କର ଦେଇ "ଯୌତୁକ ସ୍ୱରୂପେ ହସ୍ତିନାଭ" ତାଙ୍କର ରାଜ୍ୟ ଜନପଦକୁ ପ୍ରଦାନ କଲେ । ଏହି ଆନନ୍ଦର ଉତ୍ସବ ସମୟରେ ମଧ୍ୟ କେଶରୀର ଔଜ୍ୟାତିଶୟପୂର୍ଣ୍ଣ ଦର୍ଶନରେ ସମସ୍ତେ ଅଣ୍ଟଯାନ୍ୱିତ ହେଲେ । କବିଙ୍କ ତୂଳୀରେ ତାହା ଅତ୍ୟନ୍ତ ନୟନ-ମନ-ଲୋଭା ହୋଇଅଛି । "ନବୋଦିତ ରବି ଉପରେ" 'ବୃତ୍ତ ଭାସାକାର ବ୍ରହ୍ମାଣ୍ଡ ମୁକୁର" ଏବ "ସ୍ୱର୍ଣ୍ଣବର୍ଣ୍ଣ କେଶରୀର" ଅବତୀର୍ଣ୍ଣ ହେଲ । ସେହି କେଶରୀ ଉପରେ "ବିଶାଳ ତ୍ରିଶୂଳଧାରିଣୀ—ସିଂହବାହିନୀ ବିରଜା" । ଦେବୀଙ୍କ ଦର୍ଶନ ଲଭି କବି ଜନସାଧାରଣ ଜୟରବରେ ଆକାଶ ଅବନୀ କଂପନ କଲେ । ଶେଷରେ କବି ତାଙ୍କର ଶେଷ ଉଦ୍ଦେଶ୍ୟଟିକୁ ପ୍ରାଞ୍ଜଳ କରିବା ନିମନ୍ତେ—"କେଶରୀ ଉପାଧିଧାରୀ ନୀଳମଣି ପାଳିଲେ ମୁଖେ ଉତ୍କଳ" କେଶରୀ ବଂଶର ପ୍ରତିଷ୍ଠାନକୁ କାବ୍ୟରୂପେ ପ୍ରକଟନ କରି ରାଧାନାଥ ଇତିହାସ ପନ୍ଥାରୁ ବହୁଦୂର ଛୁଟିଯାଇଛନ୍ତି ସତ୍ୟ ମାତ୍ର ରାଧାନାଥଙ୍କୁ ଐତିହାସିକ ରୂପେ କମ୍ବା ଯଯାତି କେଶରୀ କାବ୍ୟକୁ ଇତିହାସ ରୂପେ ପାଠ କରିବା ସାହିତ୍ୟ ରସିକ ପକ୍ଷେ ମୂଢ଼ତାର କାର୍ଯ୍ୟ ।

ଷଟବଂଶ ଜାତ, ମଗଧନିବାସୀ ଦୁଇଟି ଯାମଳଭ୍ରାତ ଭଟିମୋ ବିରଜା ଦେବୀଙ୍କ ପାଦପଦ୍ମ ଧ୍ୟାୟି ବୈତରଣୀ ତଟରେ ରହୁଥିଲେ । ସେ ଦୁହିଙ୍କର ଅନ୍ୟଗତି ନଥିଲା, କାରଣ ସେମାନେ ଶୈଶବରୁ ମାତୃହୀନ ଓ ସାବତ ମାତାର କ୍ରୂର ମନ୍ତ୍ରଣାରେ ପିତାଙ୍କ ଦ୍ୱାରା

ଅନାବୃତ । ନିଜ ଦେଶରେ ଆଶ୍ରୟ ନପାଇ ନିଜ ଜୀବନକୁ ରକ୍ଷା କରିବା ଆଶାରେ ସେହି ଦୁଇଟି ଯୁବକ ଯୁବତୀ ପଳାଇ ଆସିଥିଲେ । ସେମାନେ ବୈତରଣୀକୁ ଆସିବା ପୂର୍ବରୁ ଅନେକ ଦେଶ ଦେଶ ପର୍ଯ୍ୟଟନ କରିଥିବାର ଅନୁମିତ ହୁଏ । ଭାଇ ଭଉଣୀଙ୍କର ରୂପ ଏକାକାର । ଯୌନ ପ୍ରଭେଦ ଛଡ଼ା ସେମାନଙ୍କର ରୂପରେ କି ବର୍ଣ୍ଣରେ ଅନ୍ୟ କୌଣସି ପାର୍ଥକ୍ୟ ନଥିଲା । ପୁଣି ସେହି ଯୌନ ପ୍ରଭେଦକୁ ମଧ୍ୟ କମଳର ପୁରୁଷବେଶ ଲୁକ୍କାୟିତ କରି ରଖି ପାରିଥିଲା । କମଳ କାହିଁକି ପୁରୁଷ ବେଶ ଧାରଣ କରିଥିଲା ତାହାର କାରଣ କାବ୍ୟରେ ଉଲ୍ଲେଖ କରାଯାଇ ନାହିଁ । କିନ୍ତୁ ପରିସ୍ଥିତିରୁ ଅନୁମାନ କରାଯାଇପାରେ ଯେ, କମଳ ବିଦେଶରେ ପୁରୁଷରୂପରେ ରହି ନିଜକୁ ଅଧିକ ନିରାପଦ ମନେ କରୁଥିଲା । ନିଜ ଭାଇ ନିକଟରେ ଥିଲେ ସୁଦ୍ଧା ଅନେକ ସମୟରେ ତାକୁ ଏକୁଟିଆ ମଧ୍ୟ ରହିବାକୁ ହେଉଥିଲା । ତେଣୁ କମଳର ପୁରୁଷ ବେଶ ଧାରଣ ଅତି ସ୍ୱାଭାବିକ । ଏହି ପୁରୁଷ ବେଶ ହେତୁ ଯାମଳଦ୍ୱୟଙ୍କର କିଛିହେଲେ ପ୍ରଭେଦ ଜଣାଯାଉ ନଥିଲା । ଏକ ରୂପରେ, ଏକ ବେଶରେ ରହି, ଏକ ପାରିଧି ବୃତ୍ତି ଅବଲମ୍ବନ କରି ସେହି ନବାଞ୍ଚନ ବୈତରଣୀ କୂଳରେ କାଳ ଯାପନ କରୁଥିଲେ । ଦୁହିଁଙ୍କର ରୂପର ଐକ୍ୟକୁ କବି ଶେଷରେ ଦୁଇଟି ଉପମା ଦେଇ କହିଛନ୍ତି—"ଏକ ବୃନ୍ତେ ବେନି ପୁଷ୍ପ କି ସେ, ଏକ ମୃଣାଳେ ବେନି କମଳ" ।

ବର୍ଣ୍ଣନା ପରିପାଟୀ, ପରିସ୍ଥିତି ପ୍ରକଟନ ପରେ ରାଧାନାଥ ସେକ୍ସପିୟରଙ୍କଠାରୁ ଯେତେ ଭିନ୍ନ ଓ ମୌଳିକ ହୁଅନ୍ତୁ ପଛକେ ଭାଇ ଭଉଣୀଙ୍କୁ ଯାମଳ କରି ରୂପର ଐକ୍ୟ ପ୍ରଦାନ କରିବା ଭାବ ଯେ ସେ ଇଂରାଜ କବିଙ୍କ "ଦ୍ୱାଦଶ ରଜ୍ଞ" ନାଟକରୁ ଗ୍ରହଣ କରିଛନ୍ତି

ସେଥିରେ ସନ୍ଦେହ ନାହିଁ । ସେହି ନାଟକର ସେବାଷ୍ଟିଅନ ଓ ଭାୟୋଲା ସଙ୍ଗେ ଯଯାତି ଓ ବିମଳାର ତୁଳନା କଲେ ଏହା ସ୍ପଷ୍ଟ ହୁଏ । ସେ ଦୁହେଁ ଯାମଳ ଭାଇ ଭଗିନୀ ଓ ଭାୟୋଲା ବିମଳା ପରି ପୁରୁଷର ବେଶରେ ଅବୃତ୍ତା ହୋଇ ଠିକ୍ ସେବାଷ୍ଟିଅନ ପରି ଦେଖା ଯାଉଥିଲା । ରାଧାନାଥ ଯଯାତି କେଶରୀ କାବ୍ୟକୁ "ଦ୍ୱାଦଶ ରାତ୍ର" ଗ୍ରନ୍ଥରେ ହାଲି ନାହାନ୍ତି ସତ୍ୟ, ମାତ୍ର ପ୍ରେମର ଅଦାନ ପ୍ରଦାନରେ ରୁଚିବୈଚିତ୍ର୍ୟଜନିତ ଯେଉଁ ପ୍ରାଥମିକ ବାଧା ଓ ମଧୁର ପରିଣାମର ଭାବ ଏହି କାବ୍ୟରେ ଦୃଷ୍ଟିଗୋଚର ହୁଏ ତାହା ଉଲ୍ଲିଖିତ ଇଂରେଜୀ ନାଟକରୁ ଗୃହୀତ ବୋଲି କହିବାର ଯଥେଷ୍ଟ କାରଣ ଅଛି । ଲଳିତା ଯେପରି ଜଣେ ନାରୀକୁ ପୁରୁଷ ରୂପରେ ଦେଖି ପ୍ରଥମ ଦୃଷ୍ଟି-ଗୋଚରରେ ପ୍ରେମାବଦ୍ଧ ହୋଇ କହି ପକାଇ ଥିଲା, "କୁମାର ନୋହିଲେ ଲେଖାଅଛି, ମୋର ଲଲାଟେ ଚିର କୌମାର" ସେହିପରି ଭାୟୋଲାକୁ ସେସାରିଓର ପୁରୁଷ ବେଶରେ ଦେଖି ଅଲିଭିଆ ନିଜ ପ୍ରେମକୁ ଅଯାଚିତ ଭାବେ ପ୍ରଦାନକଲା ପରିଶେଷରେ ଭୁଲକ୍ରମେ ଭାୟୋଲାର ଭାଇ ସେବାଷ୍ଟିଅନଙ୍କୁ ନିଜ ପତି ରୂପେ ପ୍ରାପ୍ତ ହେଲା ଓ ଏହି ଭୁଲ ପଛେ ବୁଝିପାରି ସେ ଦୁଃଖିତ ନ ହୋଇ ପରମ ସନ୍ତୋଷ ଲଭିଲା । ବିମଳା ବୋଲି ଭାବି ସେହିପରି ଲଳିତା ଯଯାତିଙ୍କୁ ପାଇଲା । ମାତ୍ର ଯଯାତିର ପ୍ରେମରେ କୃତ୍ରିମତା ଓ ମିଥ୍ୟାଚରଣ ଥିଲା । ଲଳିତା ଏହା କେତେକ ଜାଣିଲା ପୁଣି ଜାଣିବା ହେତୁ ତାହାର ଅନନ୍ତ କି ଦୁଃଖ ଜାତ ହେଲା, ଲଳିତା ଯଯାତିର ପ୍ରକୃତ କପଟତା ଓ ଯୌନ ପରିବର୍ତ୍ତନ ବୃତ୍ତାନ୍ତ ମିଥ୍ୟା ବୋଲି ଜାଣିଥିଲେ ବିମଳାଠାରେ ଥିବା ପ୍ରେମକୁ ଫେରାଇ ଆଣି ଯଯାତିଙ୍କୁ ଦେବାକୁ ସମର୍ଥା ହୁଅନ୍ତା କି ନାହିଁ ଜଣାଇବାକୁ କବି କାବ୍ୟରେ କୌଣସି ଚେଷ୍ଟା କରିନାହାନ୍ତି ।

ଲଳିତା ପ୍ରଥମେ ବିରଜା ମନ୍ଦିରରେ ଯଯାତିଙ୍କୁ ଯଦି ଦେଖିଥାନ୍ତେ (କବି ଯଦି ଯଯାତିଙ୍କୁ ଲଳିତାଙ୍କଠାରୁ ଲୁଚାଇ ନଥାନ୍ତେ) ତେବେ ବିମଳଙ୍କୁ ସାରଥି ବେଶରେ ଦେଖି ତାଙ୍କ ମନରେ ଯେଉଁ ଶୃଙ୍ଗାର ଭାବ ଉଦୟ ହୋଇଥିଲା ସେହି ଭାବ ନିଶ୍ଚୟ ଜାଗ୍ରତ ହୋଇଥାନ୍ତା । ମାତ୍ର ସେକ୍ସପିୟରଙ୍କ ନାଟକର ଛାୟାରେ ସେ ବିମଳଙ୍କୁ କାବ୍ୟରେ ସ୍ଥାନ ଦେଇ ପ୍ରେମର ବିମଳ ଓ ନିସର୍ଗ ଧାରାକୁ କ୍ଷୁଣ୍ଣ ଅବିଳ କରିଦେଇ ଅଛନ୍ତି । ପୁଣି ବିମଳଙ୍କୁ ନାରୀ ବୋଲି ଜାଣିବା ପରେ ମୁଗ୍ଧା ଲଳିତାର ଭାବଭଙ୍ଗି, କାର୍ଯ୍ୟକଳାପ, ଆଗ୍ରହ ବ୍ୟଗ୍ରତାକୁ ଲକ୍ଷ୍ୟ କଲେ ମନରେ ସେସବୁ ଅସମ୍ଭବ ଓ ଅସ୍ୱାଭାବିକ ପରି ପ୍ରତୀତ ହେଉଛି ।

ସେକ୍ସପିୟରଙ୍କ ଦ୍ୱାଦଶରାତ୍ର କଥାଟିକୁ ଅଳ୍ପ ଟିକିଏ ଅନୁସରଣ କରି ଅନ୍ୟ ପରିସ୍ଥିତିର ସୃଜନ ଦ୍ୱାରା ବିମଳ ପରିବର୍ତ୍ତେ ଯଯାତି ଲଳିତାର ଲଭ୍ୟ ହୋଇଥିଲେ କାବ୍ୟଟି ଆହୁରି ଅଧିକ ସୁନ୍ଦର, ସ୍ୱାଭାବିକ ଓ ଚିତ୍ତବିନୋଦକ ହୋଇ ପାରିଥାନ୍ତା । ବିମଳାକୁ ଏତେ ଶୀଘ୍ର ସ୍ତ୍ରୀ ବୋଲି ଚିହ୍ନାଇ ଦେଇ ଲଳିତା ସଙ୍ଗରେ କପାଳେଶ ଦୁର୍ଗକୁ ପଠାଇବା ଦ୍ୱାରା କବି କାବ୍ୟଟିର ସୌନ୍ଦର୍ଯ୍ୟ କ୍ଷୁଣ୍ଣ କରିଅଛନ୍ତି । ପୁଣି ରାଜନନ୍ଦିନୀ ଲଳିତାକୁ ବିମଳାର ପାର୍ଶ୍ୱଶାୟିନୀ କରି ଅତିଶୟ ହୀନ, ଘୃଣ୍ୟ ଓ କାମଲାଲସା ପଙ୍କିଳ ପ୍ରେମ ସାଗରରେ ବୁଡ଼ାଇ ଅଛନ୍ତି ।

ଯାହା ହୋଇପାରେ ନାହିଁ ସେ ବିଷୟରେ ଚିନ୍ତାକଲେ କିଛି ଲାଭ ନାହିଁ । ଅଳ୍ପ ଦୁଇଟି ଅସ୍ୱାଭାବିକତା କାବ୍ୟରେ ପାଠକେ ଦେଖି ପାରିବେ । ବିମଳ ଓ ଲଳିତାର ସୁଦୀର୍ଘ ପ୍ରେମାଳାପରେ ବିମଳାର ପ୍ରକୃତ ପରିଚୟ ପୁଣି ଯଯାତିର ଅନ୍ତର୍ଦ୍ଧି ବିଷୟ ଲଳିତାକୁ ଜଣାଇ

ଧରିପାରି ନାହାନ୍ତି ବରଂ ବିମଳା ପ୍ରକାରାନ୍ତରରେ ଲଳିତାଙ୍କୁ ନିଜର ପରିଚୟ ଦେବାକୁ ଯାଇ ମିଥ୍ୟାରେ କହନ୍ତି—

"ଦେଶ ଦେଶାନ୍ତରେ ଏକାକିନୀ ଭ୍ରମେ
ଦୈବବିବ୍ରତ ଅନ୍ତରେ ।"

ତା' ପରେ ସେ ନିଜ ବିଷୟ ଯାହା ଯାହା କହନ୍ତି ତହିଁରେ ଏକ ବଚନର ପ୍ରୟୋଗ କେବଳ ଦେଖାଯାଏ । "ନିକାଞ୍ଚନେ ରହୁ ଧନ ଗଣଇ", "ପର୍ଣ୍ଣଶାଳା ରଚି କରୁଅଛି ଅବସ୍ଥିତି" ଏହି ସବୁ କ'ଣ ସେ ଏକା କରୁଥିଲେ ? ଏପରି କଥୋପକଥନକୌଶଳରେ ଭଗିନୀ ନିଜର ଏକମାତ୍ର ଗୁଣ ଯଯାତି ବିଷୟ କହିବା ଅତିଶୟ ସ୍ୱାଭାବିକ । ମାତ୍ର ସେହି ସ୍ୱାଭାବିକ ମାର୍ଗକୁ ଛାଡ଼ି କବି କହନ୍ତି, "ଯଯାତିର କଥା ପ୍ରସଙ୍ଗ ବିମଳା ନକଲେ ତହିଁ ପ୍ରକାଶ—ଅନକଥା ଖେଳି ନାନାମତେ ବେଳ କଲେ ହାସ ପରିହାସ" । କାବ୍ୟର ପରିସ୍ଥିତି ସୃଜନରେ କବିଙ୍କର ପୂର୍ଣ୍ଣ ଅଧିକାର ଅଛି ସତ, ମାତ୍ର 'ନେମର ରାଜ୍ୟ' ନୀତି ଯେପରି ଲୋକ ଶାସନର ପରିପନ୍ଥୀ, ଅସ୍ୱାଭାବିକ ସୃଷ୍ଟି ସେହିପରି କାବ୍ୟଜଗତ ଶାସନରେ ଅସଙ୍ଗତ ଓ ପ୍ରତିବନ୍ଧ-ମୂଳକ । ଯଯାତିର କଥା ପ୍ରସଙ୍ଗ ତହିଁ ପ୍ରକାଶ ନକରିବାରେ ବିମଳାର କୌଣସି କାରଣ ନାହିଁକି କବିଙ୍କର କୌଣସି ଅଧିକାର ନାହିଁ । ବିରହୀ ଦର୍ଶନେ ସମ୍ମୁଖରେ ଯଯାତି ଲୁକାୟିତ ରହି ଶେଷ ପର୍ଯ୍ୟନ୍ତ ଦେଖା ନଦେଇ ଲଳିତାର ଅଦର୍ଶନ ପରେ ତାହାର ପ୍ରେମ ପାଇଁ ଉନ୍ମତ୍ତ ହେବା ଦେଖି ଯଯାତି ନିପଟ ଉଲ୍ଲୁ ଓ ବୋକା ବୋଲି ଭାବିବାକୁ ପାଠକଙ୍କର ପୂର୍ଣ୍ଣ ଅଧିକାର ଅଛି । ଯଯାତି ତ ଅନ୍ତଃପୁରବାସିନୀ ନୁହନ୍ତି । ସେ କାହିଁକି ଲଳିତାର ଦୃଷ୍ଟିରୁ ଶେଷ ପର୍ଯ୍ୟନ୍ତ ଲୁକାୟିତ ରହି ତାଙ୍କ ବିରହରେ ଛଟପଟ ହେବ ? ପ୍ରେମିକ କି କେବେ ସେପରି ମୂର୍ଖଭଳି କାର୍ଯ୍ୟକରେ ? ଦୁଷ୍ମନ୍ତ କି ତାହା କଣ୍ୱଙ୍କ ଆଶ୍ରମରେ

କରିଥିଲେ ? ଯଯାତିଙ୍କର ଯଥେଷ୍ଟ ଧୈର୍ଯ୍ୟ ଥିଲା । ସେ ଭୀରୁ ନଥିଲେ ପୁଣି ପ୍ରେମକୁ ନିଜର ଆୟତ୍ତ କରିବାକୁ ତାଙ୍କର ଯଥେଷ୍ଟ ବୁଦ୍ଧି ଥିଲା । ଏହା ପରବର୍ତ୍ତୀ ଘଟଣା ନିଚୟରୁ ଜଣାଯାଏ । ତେବେ ତାଙ୍କୁ ରାଣୀ ଅନ୍ତଃପୁରର ଅସୂର୍ଯ୍ୟମ୍ପଶ୍ୟା ସଙ୍ଗେ କେମାପର ମନ୍ଦିର ଉଦ୍ୟାନରେ ଦେଖିବାର କାରଣ କଅଣ ? ଯଯାତି କ'ଣ ଲଳିତାର ପାର୍ଶ୍ୱ ଦେଶ ଦେଖି ଭ୍ରାନ୍ତ ହୋଇଲେ ? ତାହାହେଲେ ସେ କାବ୍ୟର ନାୟକ ଓ ନହୁଷଙ୍କ ବଂଶର ପ୍ରତିଷ୍ଠାତା ହେବାକୁ କିପରି ଯୋଗ୍ୟ ହୋଇ ପାରିବେ ? ଯଯାତିଙ୍କୁ କାବ୍ୟର ବୀର କରି ସୁଦ୍ଧା ପ୍ରଥମ ଦର୍ଶନରେ ପାଠକଙ୍କୁ ଯଯାତି ମନ୍ଦିର ମଧ୍ୟରେ ଫୁଲ ଗୁନ୍ଥୁଥିବା ଲୁହାଯାଇଅଛି । ଫୁଲ ଗୁନ୍ଥୁ ଗୁନ୍ଥୁ ଲଳିତାର ଆସିବା ଦେଖି ସେ କୌଣସି ଏକ କୋଣରେ ଲୁଚିଗଲେ । ଏହା ଯେପରି ଯଯାତି ପକ୍ଷରେ ଅସ୍ୱାଭାବିକ ସେପରି କବିଙ୍କ ପକ୍ଷରେ ଅନ୍ୟାୟମୂଳକ । ଅବଶ୍ୟ ବିରହୀଙ୍କ ଭକ୍ତ ହୃଦୟରେ ଦେବୀଙ୍କୁ ସେ ଫୁଲ ଗୁନ୍ଥି ଦେବାରେ କିଛି ଅଶୋଭନତା ନଥାଇ ପାରେ । ମାତ୍ର ବିମଳା ଯେତେବେଳେ ଯଯାତିର ସହବାସିନୀ ସେତେବେଳେ ଏହି ଫୁଲଗୁନ୍ଥା କାର୍ଯ୍ୟଟି ବିମଳା ଭାଗରେ ପଡ଼ିଥିଲେ ଅଧିକ ସୁନ୍ଦର, ଅଧିକ ସ୍ୱାଭାବିକ ଓ ଅଧିକ ଲଳିତ ହୋଇଥାନ୍ତା । ଯେଉଁ କ୍ଷତ୍ରିୟ ବୀର ନିଜର ନିଶ୍ଚିତ ମରଣକୁ ତିଳାର୍ଦ୍ଧ ପରିମାଣ ଲକ୍ଷ୍ୟ ନ କରି ବୀରର ମରଣ ନିମନ୍ତେ ସପ୍ତ ଅଶ୍ୱାରୋହୀଙ୍କ ସଙ୍ଗେ ଯୁଦ୍ଧ କରିବାକୁ ପରେ ଇଚ୍ଛା କଲେ, ସେହି ବୀରଙ୍କୁ ଅଗ୍ରେ ପ୍ରଥମେ ଜଣେ ଫୁଲଗୁନ୍ଥା—ମାଳିନୀ ଓ ଅବରୋଧ—ଲୁଚା ନାରୀ ରୂପେ ବୀରତ୍ୱରେ କାଳିମା ଲଗିଛି ବୋଲି ପାଠକଙ୍କ ମନରେ ଦୁଃଖ ଓ ଅତୃପ୍ତି ଜାତ କରାଇବା ଖୁବ୍ ସମ୍ଭବ ।

ଯେ କୌଣସି କାର୍ଯ୍ୟରେ ଜଣାରେ ହେଉ ବା ଅଜଣାରେ ହେଉ ଗୋଟିଏ ଦୋଷ ଘଟିଗଲେ ତାହାର ଆନୁଷଙ୍ଗିକ ରୂପେ ଅନ୍ୟ ଦୋଷଗୁଡ଼ିକ ତା ପଛକୁ ତା ପଛ ଗୋଡ଼ାଇଥାନ୍ତି । ଯଯାତିଙ୍କ ସମ୍ବନ୍ଧ ଲଳିତାର ଯେଉଁ ପ୍ରେମ ପରିଚୟ ପରେ ଦିଆ ଯାଇଛି ତାହା ପ୍ରେମ ରାଜ୍ୟରେ ଦୋଷାବହ ଅଟେ । ଚୋରାପ୍ରେମ ପାଇଁ ଯଯାତିଙ୍କୁ କେହି ଦୋଷ ଦେଇ ନପାରେ । ନାଗରା ବଜାଇ କୌଣସି ନାୟକ ନାୟିକା ପ୍ରେମ କରେନାହିଁ । ସେପରି କଲେ କାବ୍ୟର ଶୃଙ୍ଗାର ନଷ୍ଟ ହୋଇଯାଏ ଓ ରାଜନୈତିକ ବିବାଦ ପରି ସେହି ପ୍ରଣୟ ସ୍ୱାଦୁହୀନ ଓ ରୋମାଞ୍ଚହୀନ ହୁଏ । ଯୁବକ ଯୁବତୀର ମିଳନ ଅନ୍ତତଃ କାବ୍ୟ ରାଜ୍ୟରେ ଗୋପନରେ କେବଳ ଘଟେ । ପୂର୍ଣ୍ଣ ପୌରୋହିତ୍ୟର ଅପେକ୍ଷା ନରଖି କାନ୍ତ କାନ୍ତାଙ୍କ ମିଳନ ଯେତେ ଅବୈଧ ବୋଧ ହେଲେ ସୁଦ୍ଧା ପରିଶେଷରେ ତାକୁ ବୈଧାନିକତାର ଆଦର ଦିଆଯାଏ । ଗାନ୍ଧର୍ବ ବିଧାନରେ ସ୍ୱାନ୍ତଃପୁରରେ ଲଳିତା ଯଯାତିର ଯେଉଁ ଗୁପ୍ତ ପ୍ରଣୟର ଲୀଳା କବି ବର୍ଣ୍ଣନା କରିଅଛନ୍ତି ସେଥିରେ ନୀତି ପ୍ରବର୍ତ୍ତକ ନାସାକୁଞ୍ଚନ କରିପାରେ । ମାତ୍ର କବିତା ଶିଳ୍ପୀ ସେପରି ସୁଯୋଗର ସଦ୍ବ୍ୟବହାର କରିବାକୁ ଛାଡ଼ନ୍ତି ନାହିଁ ବା କଳାରସିକ ତାହାର ନିନ୍ଦା କରେନାହିଁ । ବାଣାସୁରଙ୍କ ଗୃହରେ ଅନିରୁଦ୍ଧଙ୍କ ପ୍ରବେଶ, ଶକୁନ୍ତଳାଙ୍କ ସଙ୍ଗେ ଦୁଷ୍ମନ୍ତଙ୍କ ସମ୍ମେଳନ ଓ ଜୁଲିଏଟଙ୍କ କକ୍ଷର ଗବାକ୍ଷ ତଳେ ରୋମିଓର ଅଭିସାରକୁ ଲକ୍ଷ୍ୟକରି କୌଣସି ସମାଲୋଚକ କବିଙ୍କୁ ନିନ୍ଦା କରିବାର ଶୁଣା ଯାଇନାହିଁ । ବରଂ ଚୋରା ପ୍ରେମର ସୁସ୍ୱାଦୁ ମାଧୁର୍ଯ୍ୟ ଅନୁଭୋଗ କରି ପାଠକମାନେ ଆନନ୍ଦିତ । ଯଯାତି ସେହିପରି ଲଳିତାର ଅଙ୍ଗ ସଙ୍ଗ ଲାଭ କରିବାରେ ତାହାର କିଛି ଆପତ୍ତି ନଥାଇ ପାରେ । ମାତ୍ର ଯଯାତିଙ୍କର ପ୍ରତାରଣା ଅନ୍ୟଠାରେ ନ ହୋଇ ସ୍ୱୟଂ ଲଳିତାଠାରେ

ହୋଇଥିବ । ଏହି ଅପରାଧ ନିମନ୍ତେ ଘଟଣାଚକ୍ର ଯଦି ଦାୟୀ ହୋଇଥାନ୍ତା ତେବେ ଯଯାତି ନିନ୍ଦାରୁ ମୁକ୍ତି ଲାଭ କରିପାରିଥାନ୍ତେ । ଅଲିଭିଆ ସେକ୍ସପିଅରଙ୍କ ପରିକଳ୍ପିତ ସେବାଷ୍ଟିଆନଙ୍କୁ ସେଜାରିଓ ରୂପରେ ଲାଭ କରି ଯେଉଁ ଭୁଲ କଲା ସେ ଭୁଲ ନିମନ୍ତେ ଘଟଣାଚକ୍ର ବ୍ୟତୀତ ଅନ୍ୟ କେହି ଦାୟୀ ନଥିଲେ । ମାତ୍ର ଯଯାତିର କଥା ଅନ୍ୟପ୍ରକାର । ସେ ନିଜେ ଯୌନ ପରିବର୍ତ୍ତନର ଗୋଟିଏ ଅଦ୍ଭୁତ କାହାଣୀ କଳ୍ପନା କରି ଲଳିତାର ମନରେ ଗୋଟିଏ ବିଶ୍ୱାସ ଜନ୍ମାଇଲା ଯେ ସେ କେବଳ ବିମଳା ବ୍ୟତୀତ ଅନ୍ୟ କେହି ନୁହେ । ଏହି ପ୍ରତାରଣାରେ ପଡ଼ି କେବଳ ଲଳିତା ଯଯାତିର ପ୍ରଣୟ ପାଶରେ ଅଟକା ହେଲା । ତା ନ ହେଲେ ସେ ନ ଦୁଅନ୍ତା ଏପରି କିଛି ଅସମ୍ଭାବ୍ୟତା ନଥିଲା । ଲଳିତାର ମନ ଯେପରି ବିମଳାର ପୁରୁଷ ରୂପରେ ଆକୃଷ୍ଟ ହୋଇଥିଲା ବିମଳାକୁ ପୁରୁଷ ରୂପରେ କଳ୍ପନାକରି ସେ ତହିଁ ପ୍ରେମରସ ଲାଭ କରିବାପାଇଁ ଯତ୍ନ କରି ବାସ୍ତବତା ହେତୁ ଅକୃତକାର୍ଯ୍ୟ ହେଉଥିଲା, ଯଯାତି ବିମଳା ବେଶରେ ଯାଇ ନିଜର ପ୍ରକୃତ ସ୍ୱରୂପ ପ୍ରଣୟିନୀକୁ ଦେଖାଇ ଥିଲେ ଲଳିତା ସେହି ପ୍ରେମକୁ ପ୍ରତ୍ୟାଖ୍ୟାନ କରନ୍ତା ବୋଲି ମନେ ହୁଏ ନାହିଁ । ଅନ୍ତତଃ ଏତିକି ଯଦି କବି କରିପାରିଥାନ୍ତେ ତେବେ ଯଯାତି କେଶରୀ କାବ୍ୟର ପ୍ରେମାମୃତକୁ ସ୍ୱର୍ଣ୍ଣ ପାତ୍ରରେ ପରଷି ପାଠକକୁ ଆପ୍ୟାୟିତ କରନ୍ତେ ମାତ୍ର କବିବରଙ୍କ ଭାଗ୍ୟରେ ଏହି ପ୍ରଶଂସା ବିଧି ଦେଇ ନଥିଲେ । ତେଣୁ ସେ ପ୍ରେମର ସୁସ୍ୱାଦୁ ଅମୃତଧାରକୁ ଅସଂସ୍କୃତ ଆଧାରରେ ରଖି ଆବିଳ କରି ଦେଲେ ।

ଯଯାତିଙ୍କ ପ୍ରତାରଣାଚରଣ ଅପରାଧ ଏତିକି କ୍ଷମା ଯୋଗ୍ୟ ଯେ ସେ ଲଳିତାର ପ୍ରେମରେ ପ୍ରଥମ ଦୃଷ୍ଟିପାତ ମାତ୍ରେ ପତିତ ହୋଇଥିଲେ । ବିମଳଠାରୁ ସଙ୍କୁମାସଙ୍କ ସଦ୍ଭାବ ବୃଦ୍ଧି ସ୍ଥିର

ଭଲେ ଯେ ପ୍ରତାରଣା ନ କରନ୍ତି ତାଙ୍କ ପକ୍ଷେ ଲଳିତାର ଲଳିତ ବପୁ ଲଭ ଅସମ୍ଭବ । ଯଯାତି ପ୍ରେମିକାର ପ୍ରଥମ ଦର୍ଶନଦିବସାବଧି ବିରହରେ ଅଧୀର ହୋଇ ଯାଇଥିଲେ । ଯେତେବେଳେ ସେ ବରଙ୍ଗା ମନ୍ଦିରରେ ଲଳିତାକୁ ଦେଖିଲେ ସେତେବେଳେ ତାହାର ପ୍ରେମ ଉଦ୍ଭବ ହେଲା ପୁଣି—

"ଦେଖି ସେହିକ୍ଷଣି ବିନାମୂଲ୍ୟେ ନିଜ ହୃଦୟକୁ ଦେଲା ବିକି", ପୁଣି

"ଅସମ୍ଭାଳେ ତାର ମନ ଲାଗିଗଲା
ମୋହିନୀର ମୁଗ୍ଧାନନେ,
ଲୌହ ଯଥା ଅହା ଅୟସ୍କାନ୍ତ ମଣି
ଶଳାକାର ଆକର୍ଷଣେ ।"

ତା ପରେ ଶ୍ରୀରତୀଙ୍କର ଅଶ୍ରୁ ଭରି ଭବ ଯେଉଁ ରୂପର ବର୍ଣ୍ଣନା କରିଅଛନ୍ତି ନଖରୁ ନାସିକା ଯାଏ ସେହି ରୂପ ଅତି ଅନିମେଷ ନୟନରେ ଯଯାତି ଗୃହ୍ଣିରହୁଥିଲେ । ଫୁଲଧନୁ ତାହାର ଚାପ ଆରମ୍ଭ କରି "ନିର୍ଦ୍ଦୟେ ସେ ଶରେ ବିନ୍ଧି ଯଯାତିର ହୃଦୟ କରି ଜର୍ଜର" ଠିକ୍ ଏହି ମୁହୂର୍ତ୍ତରେ—

"ସୁନେତ୍ରା ଏକାଳେ ଯଯାତି ଅଙ୍ଗକୁ
ଅଞ୍ଚଳେ ଢାଳି ଚାହାଁଣି,
ଫାନ୍ଦାରେ ନେଲା ତା ବ ଛାତିରେ ଖେଳା
ଖଞ୍ଜନ ଲେଉଠା ଅଣି ।"

ସେହି ଅଜ୍ଞାତ ଚାହାଁଣିର ଫଳରେ

"ନବ ପ୍ରେମ ସ୍ରୋତ ଉଚ୍ଛ୍ୱାସେ ପଶିଲା
ଧୈର୍ଯ୍ୟତଟ ମୂଳ ଖସି ।"

ପୁଣି ପ୍ରେମର ସମସ୍ତ ସାତ୍ତ୍ୱିକ ବିକାର ଯଯାତି ଶରୀରରେ ଜାଗ୍ରତ ହେଲା, ଯଥା—

"ତନୁ ଲୋମାଞ୍ଚିଲା      ସର୍ବାଙ୍ଗ ବୋହିଲା
ସ୍ୱେଦନୀର ଦରଦରେ,
ନାସିକା ପୁଡ଼ାରୁ      ବହିଲା ସଘନେ
ତପତ ଶ୍ୱାସ ପ୍ରଖରେ ।"

ଲଳିତା ସେଠାରୁ ଗୁଳିଗଲା ପରେ ଯଯାତି ତାହାର ସ୍ୱପ୍ନ ବ୍ୟତୀତ ଅନ୍ୟଚିନ୍ତା କରି ପାରିଲା ନାହିଁ ସତ୍ୟ ମାତ୍ର ତାହାର ତତ୍କାଳୀନ ନିଃସ୍ୱ ଅବସ୍ଥା ତାହାକୁ ଅଗ୍ରସର ନଥିଲା । ସେ ବୋଧହୁଏ ଆତ୍ମବିଶ୍ୱାସର ଏହି ଅଭାବଟିକୁ ମନରେ ରଖି ଲଳିତା ସମ୍ମୁଖରେ ଦେଖା ଦେବାକୁ ପଶ୍ଚାଦ୍‌ପଦ ହୋଇଥିଲା । ତାହାର ଦାରିଦ୍ର୍ୟ ତାକୁ ହତାଶ କରି ପକାଇଥିଲା । ସେ ତେଣୁ ଭାବିଲା—

"ମୋହ ପକ୍ଷେ ନୁହେ      ଆଶାର ତାରା ଏ
ଦୁରାଶାର ଉଲ୍‌କା ସିନା।"

ତେଣୁ ସେ ନିଷ୍ପତ୍ତି କଲା ଯେ ନୟନରଞ୍ଜନ ନବଇନ୍ଦୁ କଳାକୁ ଜନେ ଯେ ଭାବେ ଦେଖନ୍ତି ସେପରି ସେ ସେହି ରୂପସୀକୁ ଦୂରରେ ରଖି ପ୍ରେମ ପୁଷ୍ପରେ ପୂଜା କରିବ । ପୁଣି ତାହାର ଆଶା ଥିଲା ଯେ, "ଦାସ ହେଲେ ହେବ ଶ୍ଳାଘ୍ୟ ଅଙ୍ଗ ବାଳା ଶ୍ରୀଅଙ୍ଗ ସେବାରେ ଅସି ।" ସର୍ବଦା ସେ କାଚଶାସ୍ତ୍ରର ସ୍ମୃତି ରଙ୍ଗର ସଙ୍ଗୋଳି କରି ରଖିବାକୁ ଲାଗିଲା । ଲଳିତାର ଲଳିତ ରୂପ ଛବି ତାହାକୁ ଅନ୍ୟ କିଛି ଦିଶିଲା ନାହିଁ । "ଅନ୍ତରେ ବାହାରେ, ଆଗେ ପଛେ" ସୁନେହାର ନେତ୍ରୋତ୍ପଳକୁ ମାର ଗୁଣେ ଯୋଖି ପ୍ରେମିକର ଅନ୍ତର ସ୍ଥାନକୁ ବିନ୍ଧୁଥିଲା । ମାତ୍ର ସେ ସବୁ ଯଯାତିର ହୃଦୟରେ ଲୁକ୍କାୟିତ ହୋଇ କେବଳ ରହିଲା, ତାହାର ପ୍ରସ୍ଫୁଟନର ଉତ୍ତମ ଯୋଗ ଆସିବା ପର୍ଯ୍ୟନ୍ତ । ଏହି ସବୁ ବ୍ୟାଖ୍ୟାର ତାତ୍ପର୍ଯ୍ୟ ଏହି ଯେ ଲଳିତାଠାରେ ଯଯାତିଙ୍କର ଯେଉଁ ପ୍ରେମ ଥିଲା ତାହା ନିଃସନ୍ଦେହ ।

ତେଣୁ ସେ ଏହି ପ୍ରେମକୁ ଦେବାପାଇଁ ଯେ କୌଣସି ଅପରାଧ କରିବାକୁ ପ୍ରସ୍ତୁତ ଥିଲି । ତେଣୁ ବିମଳାଠାରୁ ସକଳ ବୃତ୍ତାନ୍ତ ଶ୍ରବଣ କରି ଛମଳାର ବେଶରେ ନିଜର କାର୍ଯ୍ୟ ସିଦ୍ଧ କରିବାକୁ ଠିକ୍ କଲି । ଲଳିତାର ସମସ୍ତ ବିଷୟ ବିମଳାଠାରୁ ଯଯାତି ଜାଣିପାରିଲି । ପୁଣି ସେହିସବୁ ଘଟଣାବଳୀରୁ ଲଳିତାର ତତ୍କାଳୀନ ଦଶା ତାକୁ ଆଉ ଅଜଣା ରହିଲା ନାହିଁ । ବିମଳା ଅବଶ୍ୟ ଲଳିତାର ପ୍ରେମ ବିଷୟ ବିଶଦ ଭାବରେ ଭାଇ ଆଗରେ କହିବାକୁ ସମର୍ଥ ହେଲାନାହିଁ, ତଥାଚ—

"ଲଳିତାର ଦଶା ଯଯାତି ଯାହା ନ
ଜାଣିଲା ବିମଳା ଗିରୁ
ତହୁଁ ଜାଣି ତାହା ଜାଣିଲା ସ୍ୱସାର
ସଲଜ୍ଜ ମୁଖ ଭଙ୍ଗୀରୁ
ଜାଣିଲା ଯା ଯେନ ଝଲ୍ ଠେଲଷ କେମା
ହୋଇଛି ଏବେ ଉତ୍ସୁକ
ଚତୁର-ଶ୍ରବଣେ ମୌନ ଠାବେ ଠାବେ
ହୁଏ ବଡ ବାବଦୁକ ।"

ଚତୁର ଯଯାତି ଜାଣିପାରିଲା ବିମଳାର ପୁରୁଷ ବେଶରେ ଆକୃଷ୍ଟ ହୋଇ ସେ ତାକୁ ନିଜ ହୃଦୟ ବିକି ଦେଇଛି । ତାହାର ମତରେ ବିମଳାର ପୁରୁଷବେଶ ଯାହା ସେ ନିଜେ ତାହା । ତେଣୁ ତାର୍କିକ ସ୍ୱଭାବରେ କୁହାଯାଇପାରେ ଲଳିତା ଯଯାତିକୁ ପ୍ରେମ କଲା । ଯଯାତିର ନିମ୍ନୋକ୍ତ ଭାବର ତାତ୍ପର୍ଯ୍ୟ ତାହା ବୋଲି ମନେହୁଏ ।—

"ନ ଲଭି ଲଭିଛି ବଲ୍ଲଭୀର ପ୍ରେମ
ଏଥିରେ ନାହିଁ ସଂଶୟ,
ଅଜ୍ଞାତେ ଚୋରଇ ନେଇ ମୋ ହୃଦୟ
ଦେଇଛି ନିଜ ହୃଦୟ ।"

ଲଳିତା ତାହାର ହୃଦୟକୁ ଅବଶ୍ୟ ବିମଳାକୁ, ବିଶେଷତଃ ପୁରୁଷ ବେଶଧାରୀ—ବିମଳାକୁ ବିକି ଦେଇଥିଲା । ମାତ୍ର ବିମଳା ସ୍ତ୍ରୀ ହୋଇ ତାହା କିଣିବାର ଅଯୋଗ୍ୟା । ସେଥିପ୍ରେମ କିଣିବା ଅଧିକାର ବିମଳା ରୂପ ସଦ୍ଗୁଣ ଯଯାତିର । ତଥାଚ ବିମଳାକୁ ଛାଡ଼ିଦେଲେ ଲଳିତାର ପ୍ରେମ ପାଇବା ଅସମ୍ଭବ । ତେଣୁ ଯଯାତି ଠିକ୍ କଲା "ବିମଳାର ବେଶେ ଅନାୟାସେ ହେବି ଜେମା ପାଶେ ଉପଗତ ।" ଲଳିତା ଛଦ୍ମବେଶଧାରୀ ଯଯାତିକୁ ପ୍ରେମପୂର୍ଣ୍ଣ ହୃଦୟରେ କୌଣସି ପ୍ରକାର ସନ୍ଦେହ ନରଖି ନିଜର କୃତଜ୍ଞତା ଜଣାଇବାକୁ ପାଇ କହିଲା—

"ଏତେ ବେଗେ ପୁଣି ଦେଖା ଦେବ ଅସି
ନଥିଲା ଆଶା ହୃଦୟେ ।
ଶୁଝି ନ ପାରିବି ତୁମ୍ଭ ସ୍ନେହ ଋଣ
ହେଲେ ପାଦେ ଚିର ଋଣୀ,
ଏ ସୁଦୟା ରହୁ ହୃଦୟ କମଳେ
ଏତିକି ମୋର ମାଗୁଣି ।"

ଏହି କୃତଜ୍ଞ ପ୍ରେମପୂର୍ଣ୍ଣ ଉକ୍ତିର ପ୍ରତ୍ୟୁତ୍ତରରେ ଯଯାତି ତାହାର ଯୌନ ପରିବର୍ତ୍ତନର ମିଥ୍ୟା ଓ ଅସମ୍ଭବ କାହାଣୀ ଆରମ୍ଭ କଲା । ସରଳ ହୃଦୟା ଲଳିତା ବିମଳାର ପ୍ରେମରେ ଏକପ୍ରକାର ପାଗଳିନୀ ହୋଇ ପଡ଼ିଥିଲା । ଯଯାତିର କାହାଣୀ ସତ୍ୟ ଅବା ମିଥ୍ୟା ତାହା ବାଛିବାକୁ ତାହାର ମନ ଠିକ୍ ନଥିଲା । ବିମଳା ଯାହା ହେବା ପାଇଁ ସେ ଇଚ୍ଛାକରୁଥିଲା ସେ ଇଚ୍ଛା ଅବିକଳ ପୂର୍ଣ୍ଣହେବା ଦେଖି ସନ୍ଦେହ କରିବା ପାଇଁ ତା' ମନରେ ଆଉ ସ୍ଥାନ ରହିଲା ନାହିଁ । ସେ ବିସ୍ମିତା ହେଲା ସତ୍ୟ, ମାତ୍ର ଆନନ୍ଦ ବିହ୍ୱଳା ହୋଇ ସେ ଯଯାତିର—କଥାଟିକୁ ସମ୍ପୂର୍ଣ୍ଣ ଭାବେ ବିଶ୍ୱାସ କରି ପକାଇଲା ।

"ବିସ୍ମୟ ତରଙ୍ଗ ଏକ ପରେ ଏକ
ରଙ୍ଗ ସୁଧା ହୃଦେ ଆସି,
କଲେ ପ୍ରଭୁ ପଣ ଅବଶେଷେ ତାଙ୍କୁ
ଲଜ୍ଜା ପକାଇଲା ଗ୍ରାସି ।"

ବିମଳାକୁ ପୁରୁଷ କରି ଲଳିତା ଯେଉଁ ସବୁ ଲୀଳା ମନେ ମନେ କଳ୍ପନା କରୁଥିଲା, ତାହାକୁ ପ୍ରକୃତ ପୁରୁଷ ରୂପେ ନିଜ ନିକଟରେ ଲଭ କରି ସେହି କଳ୍ପନାକୁ ବାସ୍ତବ ଆଚରଣରେ ପରିଣତ କଲା । ତେଣୁ—

"ଲଜ୍ଜାବଶେ ବାଳା ଶଯ୍ୟାରୁ ଓହ୍ଲାଇ
ତଳେ ଯାଇଁ ହେଲା ଉଭା ।"

ତା'ପରେ—

"ପ୍ରେମ ଲଜ୍ଜା ମଧ୍ୟେ ଚଳ ଟଣା ଟଣି
ଲାଗି ପ୍ରେମଶୀଳା ମନେ,
ଦ୍ୱାର ପଳାଇଲା ଲଜ୍ଜା ଲାଜ ପାଇ
ଜାଣିଲା ପ୍ରେମ ଏ ରଣେ ।"

ବିମଳାକୁ ସ୍ତ୍ରୀ ବୋଲି ଜାଣିଲା ପରେ ମୁଗ୍ଧା ତା ପ୍ରତି ପ୍ରେମାସକ୍ତା ହେବା ଅସ୍ୱାଭାବିକତା ବ୍ୟତୀତ ଲଳିତାର ପ୍ରେମ ଇତିହାସରେ ଅନ୍ୟ କିଛି ଦୋଷ ନଥିଲା । ସେ ଜଣେ ପ୍ରକୃତ ପ୍ରେମିକା ଓ ତାହାର ପ୍ରେମରେ ଥିଲା କୃତଜ୍ଞତା ଓ ସତ୍ୟନିଷ୍ଠା । ବିମଳା କୁମାର ନ ହୋଇଥିଲେ ତାହା ଭାଗ୍ୟରେ ଚିର କୌମାର ଅଛି ବୋଲି ସେ ପ୍ରେମର ପ୍ରଥମ ଅବସ୍ଥାରେ କହିଥିଲା । ବିମଳା ପ୍ରତି ତାହାର ପ୍ରେମର କୌଣସି ଲାଘବ ହେଲା ନାହିଁ । ତାହାକୁ ପୁରୁଷ ରୂପରେ ପାଇ ଗାନ୍ଧର୍ବ ବିଧାନରେ ବିବାହ କରିବାକୁ ତାହାର ମନରେ ଟିକିଏ ହେଲେ ଦ୍ୱିଧା ରହିଲା ନାହିଁ । ଯଯାତିକୁ ଦେଖିଲେ ପ୍ରାଣଦଣ୍ଡାର୍ଥ

ରଣ ପ୍ରାଙ୍ଗଣକୁ ନିଅ ଗଲ ସେତେବେଳେ ଲଳିତାର ରୂପ ଦେଖିଲେ, ତାହାର ଦୁଃଖ ଅନୁମାନ କଲେ ତାହାର ପତି ପ୍ରେମରେ ନିର୍ମଳତା, ପତି ଭକ୍ତିର ପରାକାଷ୍ଠା ଓ ସତୀତ୍ୱପୂର୍ଣ୍ଣ ପତିପରାୟଣତା ଜଣାଯାଏ ।

ପ୍ରତ୍ୟକ୍ଷ ଗୃହିଣୀ କରୁଣା ପରାଏ
କେମାର ଏ ଭାଳ ଛବି
ଦେଖିଥିଲେ ନିସ୍ତେ ତରଳି ଯାଆନ୍ତା
କି ଗ୍ରାବା କି ଅବା ପବି ।
ଯାଇଥିଲା ଶିଶୁ ସାରଙ୍ଗ ଲୋଚନ
ନୀରବେ ବେଦନେ ପୂରି
ଶିଥିଳ ପବଣ ହୋଇଥିଲା କି ସେ
ନିଶାନ୍ତ ଗଙ୍ଗଶିଉଳି ।
ସଖି ଜରେ ଜର— ପଇଠି କି ଦେଇ
ମଧ୍ୟେ ଜଳ୍ପ କୃଶୋଦରୀ,
ନୈରାଶ୍ୟେ ନୀରବ ନିଷ୍ଫଳ ଅଲେଖ୍ୟ
ଲିଖିତ ପ୍ରତିମା ପରି ।"

ପତିଙ୍କ ପାଇଁ ଦୁଃଖ କରିବା ବ୍ୟତୀତ ତାଙ୍କର ଆଉ କିଛି ନଥିଲା । ସେ ଦୋଷୀ ଏହା ସେ ଭଲରୂପେ ଜାଣିଥିଲେ । ରାଜାନ୍ତଃପୁରରେ ଜଣେ ପୁରୁଷକୁ ପିତା ମାତାଙ୍କ ଅଜ୍ଞାତସାରରେ ରଖି ତାହା ସଙ୍ଗେ ଅବୈଧ ପ୍ରଣୟ ଲୀଳା ଅଭିନୟରେ ସେ ଅପରାଧିନୀ । ଏହା ବିରୁଦ୍ଧରେ କହିବା ପାଇଁ ତାଙ୍କର କିଛି ନଥିଲା । ନୀରବ ଅଶ୍ରୁପାତ ବ୍ୟତୀତ ତାଙ୍କର କରଣୀୟ ହୋଇ ଆଉ କିଛି ନଥିଲା । ଯଯାତିଙ୍କର ବଧ ପରେ ଲଳିତା କଣ କରିଥାନ୍ତେ ସେ ପ୍ରସଙ୍ଗ ବିଚାର କରିବା ଅନାବଶ୍ୟକ । ଭଗବତୀ ବିରଜାଙ୍କ ଅନୁଗ୍ରହରୁ କାବ୍ୟଟି ସୁଖରେ ସମାପ୍ତ ହେଲା ଓ ବର ଦୋଷ ନିର୍ମୁକ୍ତ ହେଲେ ।

# ଉଷା

ନୀଳଗିରି ଅନ୍ତର୍ଗତ ପଞ୍ଚଲିଙ୍ଗ ଶୈଳ ଉପରେ ଚତୁର୍ଦ୍ଦଶୀ ନକ୍ଷ ଯୋଗେ ଯେଉଁ ଉତ୍ସବ ହେଲା ସେହି ଉତ୍ସବରେ ଯୋଗ ଦେବାକୁ ଯାଇ ଗନ୍ଧର୍ବମାନେ ହରଣସ୍ତବ ନାଟକଟି ଅଭିନୟ କରିଥିଲେ । ଉକ୍ତ ନାଟକରେ ଚିତ୍ରରଥ ହର ଭୂମିକାରେ ଓ ତିଳୋତ୍ତମା ପାର୍ବତୀ ଭୂମିକାରେ ପରସ୍ପର ହସ୍ତଧାରଣ ପୂର୍ବକ ଭାବ ଆବେଗରେ ନୃତ୍ୟରତ ଥିଲେ ଓ ଅନ୍ୟ ଗନ୍ଧର୍ବମାନେ ନୃତ୍ୟାନୁଷଙ୍ଗିକ ବାଦ୍ୟ ଓ ସଙ୍ଗୀତରେ ରତଥିଲେ । ଏହି ହରଣସ୍ତବର ଦର୍ଶକ ଥିଲେ ସ୍ୱର୍ଗାଗତ ଦେବତା ସମୂହ ଓ ବିଭିନ୍ନ ଦେଶାଗତ ଦେବୀଗଣ । ସମସ୍ତ ଦେବ ଦେବୀ ଯାଇ ଯେ ଯାହାର ସ୍ଥାନରେ ଉପବେଶନ କରି ହରଣସ୍ତବର ଅଭିନୟ ଦେଖୁଛନ୍ତି, ଏପରି ସମୟରେ ବଳାଙ୍ଗୀ ତଟରୁ ମାଣିକଖମ୍ବ ଅଧିଷ୍ଠାନୀ କାଳୀ ସେଠାରେ ପ୍ରବେଶ କଲେ । ତାଙ୍କର ବିକଟରୂପ ଦେଖି ଗନ୍ଧର୍ବମାନେ ଉପହାସ କଲେ । ଚିତ୍ରରଥ ଓ ତିଳୋତ୍ତମା ଗନ୍ଧର୍ବମାନଙ୍କର ଏହି ଅନୁଚିତ ବ୍ୟବହାରକୁ ଦମନ କରିବା ତେଣେ ଥାଉ, ସେ ଦୁହେଁ ମଧ୍ୟ ହସିବାକୁ ଲାଗିଲେ । ଏହିଭଳି ଗନ୍ଧର୍ବମାନଙ୍କର ଦ୍ୱାରା ଅପମାନିତା ହୋଇ କାଳୀଦେବୀ ସେମାନଙ୍କୁ ଅଭିଶାପ ଦେଲେ ।

"ସ୍ୱର୍ଗ କଳୁଷିତ କଲ ତୁମେ ଯେଣୁ ରୂପ ଗରବେ
ମର୍ତ୍ତ୍ୟଲୋକେ ଯାଇ ମର୍ତ୍ତ୍ୟରୂପ ଧର ରହ ସରବେ ।"

ଏପରି ଶାପରେ ବ୍ୟଥିତ ହୋଇ ଗନ୍ଧର୍ବମାନେ ଅଭିଶାପରୁ ମୁକ୍ତ ହେବାକୁ ଅନୁନୟ ବିନୟ କଲେ । ପରିଶେଷରେ ଅପ୍‌ସରା ଶିରୋମଣି ତିଲୋତ୍ତମା ମଧ୍ୟ କାତର କଣ୍ଠରେ ଶୋକ କରି କହିବାରୁ କାଳୀଙ୍କର ହୃଦୟରେ କରୁଣା ଦୟାର ସଞ୍ଚାର ହେଲା । ପୁଣି ତିଲୋତ୍ତମାଙ୍କର ପକ୍ଷଧରି ଇନ୍ଦ୍ରାଣୀ ମଧ୍ୟ ଦେବୀଙ୍କଠାରେ ବହୁତ ଜଣାଇଲେ । ତେଣୁ ସେ ତାଙ୍କର ଅଭିଶାପକୁ ନିମ୍ନମତେ ପରିବର୍ତ୍ତନ କରି କହିଲେ—

'ଅଳ୍ପ ଦିନ ପାଇଁ ହେବ ତୋର ମର୍ତ୍ତ୍ୟପୁରେ ଗମନ
ତୋ ଗୁଣେ ତରିବେ ଅଭିଶାପୁଁ ଏହି ଗନ୍ଧର୍ବଗଣ
ହସ୍ତିପଗଧର ହୋଇ ଜେନି ହେଲ ଶାପରେ ଯୁକ୍ତ
ହସ୍ତ ସ୍ପର୍ଶ ମାତ୍ରେ ମର୍ତ୍ତ୍ୟ ଜେନହେବ ଶାପରୁ ମୁକ୍ତ"

ଦୁହେଁ ଦେବୀଙ୍କର ଅଭିଶାପାନୁସାରେ ଉଲ୍‌କାରୂପେ ମର୍ତ୍ତ୍ୟଭୂମିରେ ପ୍ରବେଶ କଲେ । ସ୍ୱପ୍ନରେ ରାଣୀ ଥରେ ଦେଖିଲେ ''ଉଲ୍‌କାରେ ଉଡ଼ି ଆସିଲ ଆକାଶେ ଜ୍ୟୋତି ବହୁତ", ପୁଣି

"ଏକ ଜ୍ୟୋତି ଗଲା ମନୋରଥ ଗଡ ବାଯୁବ୍ୟ ଦିଗେ—
ଅନ୍ୟ ଜ୍ୟୋତି ସମଗଡରେ ଅସିଲ ରାଣୀ ଅନ୍ତିକେ"

ସେ ଦୁହେଁଙ୍କ ମର୍ତ୍ତ୍ୟପୁରର ଜନ୍ମ ଓ କଥା ।

ନୃତ୍ୟରତ ଗନ୍ଧର୍ବମାନଙ୍କୁ ଅଭିଶାପ ଦେଇ ମର୍ତ୍ତ୍ୟଭୂମିକୁ କୌଣସି କାବ୍ୟର ନାୟକ ନାୟିକା ରୂପେ ପଠାଇବା ଭାରତୀୟ ପୁରାତନ କବିମାନଙ୍କର ଗୋଟିଏ ଶ୍ରେଷ୍ଠ ଅନୁସୃତ ପନ୍ଥା । କବି କାଳିଦାସଙ୍କର ବିକ୍ରମୋର୍ବଶୀ ନାଟକ ଓ ବଳଦେବ କବିସୂର୍ଯ୍ୟଙ୍କ ଚନ୍ଦ୍ରକଳା କାବ୍ୟର ଆରମ୍ଭ ଏହିରୂପେ କରାଯାଇଛି । ମାନ ଶାପଗ୍ରସ୍ତା ଉର୍ବଶୀ ରମ୍ଭା ମେଳୀ ମଞ୍ଜୁଳା ପ୍ରଭୃତି ଦର୍ଶକର ବା

ପାଠକର ଯେପରି ସହାନୁଭୂତି ସ୍ବତଃ ଉଦ୍ରେକ ହୁଏ ସେପରି ତିଲୋତ୍ତମା ପ୍ରତି ହୁଏ ନାହିଁ । ଉର୍ବଶୀ ପୁରୁରବାଗତପ୍ରାଣା ହୋଇ ଭରତମୁନିଙ୍କ ଶିକ୍ଷା ପାଖୋର ହେତୁ ସରସ୍ବତୀକୃତ ଲକ୍ଷ୍ମୀ ସ୍ବୟମ୍ବର ନାଟକ ଦୃଶ୍ୟ କାବ୍ୟରେ ଲକ୍ଷ୍ମୀ ଭୂମିକାରେ "ପୁରୁଷୋତ୍ତମ" ପରିବର୍ତ୍ତେ "ପୁରୁରବା" ନାମ ଉଚ୍ଚାରଣ କରିଥିଲେ । ଏଥିରେ ଉର୍ବଶୀଙ୍କର ପ୍ରେମର ଗଭୀରତା ଜଣାଯାଏ । ଭରତ ମୁନିଙ୍କର ଶାପ ଉର୍ବଶୀଙ୍କପକ୍ଷେ ଦଣ୍ଡ ନହୋଇ ଉପହାର ହୋଇଥିଲା । ତେଣୁ ଇନ୍ଦ୍ରଦେବଙ୍କର ପୁତ୍ର ମୁଖଦର୍ଶନ ପରେ ସ୍ବର୍ଗାଗତା ହେବାକୁ ଆଦେଶ ଥିଲେ ସୁଦ୍ଧା ସେ ପୁତ୍ର ଜନ୍ମ ପରେ ମଧ୍ୟ ପୁରୁରବାଙ୍କୁ ତ୍ୟାଗ କରି ନଥିଲେ—ସ୍ବର୍ଗବାସ ପୁରୁରବାଙ୍କ ପ୍ରେମ ତୁଳନାରେ, ଉର୍ବଶୀପକ୍ଷେ ତୁଚ୍ଛଥିଲା । ଶାପଗ୍ରସ୍ତ ହେବା ପାଇଁ କେଳୀମଞ୍ଜୁଳା କିମ୍ବା ତାଙ୍କ ପତିଙ୍କର କୌଣସି ଦୋଷ ନଥିଲା । ଗନ୍ଧର୍ବମାନଙ୍କର ଏକମାତ୍ର ସମ୍ବଳ ସୌନ୍ଦର୍ଯ୍ୟ—ସେମାନେ କାହର ଦେବତାମାନଙ୍କୁ ଦେଉଥାନ୍ତି ? ତଥାପି ଦେବଶାପାନୁସାରେ ଦୁହିଁଙ୍କୁ ଉଲ୍କାକାରରେ ମର୍ତ୍ତ୍ୟଭୂମିରେ ପ୍ରବେଶ କରି ରାଜକନ୍ୟା ଓ ରାଜକୁମାର ରୂପେ ପରସ୍ପର ମିଳିତ ହେବାକୁ ହୋଇଥିଲା । ସେମାନଙ୍କର ମିଳନ ପରେ ବିୟୋଗ ଦୃଶ୍ୟ କବି ଦେଖାଇ ଥାନ୍ତେ ବୋଲି ଅନୁମାନ କରିବାକୁ କୌଣସି କାରଣ ମିଳେ ନାହିଁ । ତତ୍ପରେ ଉର୍ବଶୀର ଲକ୍ଷ୍ମୀ ସ୍ବୟମ୍ବର ନାଟକ କିମ୍ବା ଚନ୍ଦ୍ରକଳାର ଗନ୍ଧର୍ବ ଦମ୍ପତିଙ୍କର ନୃତ୍ୟ ସହିତ ଚିତ୍ରରଥ ଓ ତିଲୋତ୍ତମାଙ୍କ ସକରୁଣ ନୃତ୍ୟ ତୁଳନା କଲେ, ଶେଷୋକ୍ତ ଘଟଣା ଦ୍ବାରା ଆମ୍ଭମାନଙ୍କର ପ୍ରେମ କିମ୍ବା ସୌନ୍ଦର୍ଯ୍ୟ ପିପାସା ଚରିତାର୍ଥ ହୁଏ ନାହିଁ—ବରଂ କାଳୀ ମୂର୍ତ୍ତିର ଭୈରବ ଦୃଶ୍ୟ ଓ ହାସ୍ୟରସର ଅପମାନଜନକ ଘଟଣା ବିଷୟସୃଷ୍ଟିକୁ ସମ୍ଭୋଗଯୋଗ୍ୟ କରିପାରନ୍ତି ନାହିଁ ।

ମାତ୍ର ତାଳୀଙ୍କୁ ହରଣସୂଚକ ନାଟକକୁ ନ ଆଣିଲେ ମାଣିକ ଖମ୍ବ ନାଟକରେ ଘଟିଥିବା ଘଟଣା କପରି ହେବ ? ସୁଧାନାଥ ଉଷାଙ୍କୁ ଯେଉଁ ଭୀଷଣ ପ୍ରତିଜ୍ଞାରେ ଆବଦ୍ଧା କରାଇଛନ୍ତି ତାହାର ଉପାଦାନ ଖୋଜିବାକୁ ଆମ୍ଭମାନଙ୍କୁ ବିଦେଶକୁ ଯିବାକୁ ହୁଏ । Atalanta's Race ନାମକ କାହାଣୀ ଉଷା କାବ୍ୟର ମୂଳବସ୍ତୁ ଏଥିରେ କୌଣସି ସନ୍ଦେହ ନାହିଁ । "ଭୀଷଣ ପ୍ରତିଜ୍ଞା ମନେ ମନାଇଲା ସୁନ୍ଦରୀ, ସାରଗତ ବେଗେ ତାଙ୍କୁ ଯେ ଜିଣିବ, ହେବ ପତି ସେ ତାର" ଆଟଲାଣ୍ଟା ମଧ୍ୟ ଏହିପରି ଗୋଟିଏ ପ୍ରତିଜ୍ଞା କରିଥିଲା । ଭାରତୀୟ କୌଣସି ପୁରାଣ ଇତିହାସରେ ଏପରି ପ୍ରତିଜ୍ଞା ବିଷୟ ଶୁଣାନାହିଁ । ଏହା ଯେପରି ଭାରତୀୟ ରମଣୀ ପକ୍ଷେ ଅସ୍ପୃହଣୀୟ, ସେପରି ଅସ୍ୱାଭାବିକ । ରାଜପୁତାନାର ତାରାବାଈ ମଧ୍ୟ ଏପରି ଶପଥ କରି ନ ଥିଲେ । ସୁଧାନାଥ ଭାରତର, ବିଶେଷତଃ ଉତ୍କଳର ଗୋଟିଏ ହୃଦ୍ ରାଜପ୍ରାସାଦରେ ଆଟାଲାଣ୍ଟା ପରି ଜଣେ ଗ୍ରୀକ୍ ମହିଳାଙ୍କୁ ସୃଷ୍ଟି କରି, ଭାରତୀୟ ସ୍ୱଭାବ, ଭାରତୀୟ ସାମାଜିକତା ଓ ପାରିପାର୍ଶ୍ୱିକତା ପ୍ରଦାନ କରି ନାୟିକାଙ୍କ ଜୀବନ ଯେତେଦୂର ସମ୍ଭବ ଭାରତୀୟ ଛାଞ୍ଚରେ ଢାଳିବାକୁ ଖୁବ୍ ଚେଷ୍ଟା କରି ଅଛନ୍ତି । ତଥାପି ସ୍ଥାନେ ସ୍ଥାନେ ଉଷାଙ୍କ ଜୀବନକୁ ବୈଦେଶିକ ତଥା ଅପ୍ରାକୃତିକ ଘଟଣାନିଚୟ ଅସ୍ୱାଭାବିକ କରିଦେଇଛି । ଏପରି ଗୋଟିଏ ଭୀଷଣ ପ୍ରତିଜ୍ଞା ନାରୀପକ୍ଷେ ଯେପରି ଅସ୍ୱାଭାବିକ ସେପରି ଦୋଷଜନକ । ଆଟାଲାଣ୍ଟା ସେପରି ଭୀଷଣ ପ୍ରତିଜ୍ଞା କରିବାର କାରଣ ଅଛି—ତାହା ଅବଶ୍ୟ ବିଶ୍ୱାସ ଯୋଗ୍ୟ ନୁହେଁ, ମାତ୍ର 'ଆଟଲାଣ୍ଟା ରେସ୍' ଗୋଟିଏ କାହାଣୀ, ସେଥିରେ ସତ ମିଛର ମିଳନରେ ଦୋଷ ନାହିଁ । ଉଷା କାବ୍ୟକୁ କାହାଣୀ କହିଲେ କାବ୍ୟର ଗୌରବ ହ୍ରାସ ହେବ । ଆଟାଲାଣ୍ଟାଙ୍କ

ପିତା ପୁତ୍ର ପରବର୍ତ୍ତୀ କାଳେ ଦୁହିତାର ଜନ୍ମରେ କ୍ଷୁବ୍ଧ ହୋଇ ଶୈଶବାବସ୍ଥାରେ ତାଙ୍କୁ ଅରଣ୍ୟରେ ତ୍ୟାଗକଲେ । ମାତ୍ର ଆଟଲାଣ୍ଟା ଗୋଟିଏ ଭଲ୍ଲୁକୀଦ୍ୱାରା ଲାଳିତା ପାଳିତା ହେଲା । ପରିଶେଷରେ ସେ ରାଜାଙ୍କ ନିକଟକୁ ଆସି ରହିଥିଲା । ରାଜାଙ୍କର ସ୍ୱଭାବ ପରିବର୍ତ୍ତିତ ହୋଇଥିଲା ସତ୍ୟ, ମାତ୍ର ଆଟଲାଣ୍ଟାଙ୍କ ପାଶବିକ କ୍ରୂରତା ଦୂରହେଲା ନାହିଁ । ସେ ତେଣୁ ଗର୍ବଭରେ ସେହି ଭୀଷଣ ପ୍ରତିଜ୍ଞା କରିଥିଲେ । ମାତ୍ର ରାଜକୁମାରୀ ଉଷାଙ୍କ ପକ୍ଷେ ସେପରି ଗୋଟିଏ ଭୀଷଣ ପ୍ରତିଜ୍ଞା କରିବା ପାଇଁ ବିଶେଷ କିଛି କାରଣ ନଥିଲା । ମାତ୍ର କବିବର ଉଷାଙ୍କ ବାଲ୍ୟ ଜୀବନ ଏହି ପ୍ରତିଜ୍ଞାକୁ ଠିକ୍ ହେଲା ପରି ଚିତ୍ରଣ କରିବାକୁ ଚେଷ୍ଟା କରିଅଛନ୍ତି । ସେ ଯଦି ଆଟଲାଣ୍ଟା କଥା ବସ୍ତୁ ଉପରେ ନିର୍ଭର କରିନଥାନ୍ତେ ତାଙ୍କୁ ଏତେ ଚିନ୍ତା ଓ ଚେଷ୍ଟା କରିବାକୁ ପଡ଼ିନଥାନ୍ତା । କେଉଁ ଉତ୍କଳ ରାଜାଙ୍କର ଦୁହିତା ଅରଣ୍ୟରେ ପଶୁ ଶିକାର କରି ଅଶ୍ୱପୃଷ୍ଠରେ ବସି ନଦୀରେ କୁମ୍ଭୀର ଶିକାର କରି ତାହାର କାଳ ହରଣ କରେ କିମ୍ବା କରୁଥିଲା ? ଯାତବେଶରୀ ଓ ଉଷା ଏହି ଉଭୟ କାବ୍ୟରେ କବି ନାୟିକା ଦୁହିଁଙ୍କୁ ପାରଧିରତା କରି ସେମାନଙ୍କ ଜୀବନକୁ ସେତେ ଅସୁନ୍ଦର ଓ କର୍କଶ କରିଛନ୍ତି, କାବ୍ୟର ପାରିପାର୍ଶ୍ୱିକତା ସେତେ ଅସ୍ୱାଭାବିକ ଓ ଅଜାତୀୟ କରିଛନ୍ତି । ବୈଦେଶିକ ଗ୍ରନ୍ଥରେ ଅନ୍ତର କାବ୍ୟ ବସ୍ତୁକୁ ଢାଳିବାକୁ ଯାଇ କବିବର ଯେଉଁ ଦୋଷ କରିଛନ୍ତି ତଦ୍ଦ୍ୱାରା ପ୍ରତି ସ୍ତରରେ କାବ୍ୟ ଦୂଷିତ ହୋଇ ପଡ଼ିଛି । ଲାବଣ୍ୟବତୀ, ଶକୁନ୍ତଳା, ଚନ୍ଦ୍ରକଳା, ବା ଉର୍ବଶୀ ଯେପରି ଭାରତୀୟ ମହିଳା-ରୂପେ ସେମାନଙ୍କର ସ୍ୱାଭାବିକ ଗୁଣରାଶିରେ ମଣ୍ଡିତା ହୋଇ ଆମ୍ଭମାନଙ୍କ ମନକୁ କିଣି ନିଅନ୍ତି, ସେପରି ଭାଗ୍ୟ ଲଳିତା କିମ୍ବା ଉଷାଙ୍କର ନାହିଁ । ରାଜପଥ ରଚିତ ହେଲା, ପଥର ଆରମ୍ଭ

ହେଲା, ପଦ୍ମଁଧାଠାରେ ଓ ଶେଷହେଲା ମାଣିକଖମ୍ବଠାରେ । ସେଠାରେ ଗୋଟିଏ ରତ୍ନଜଡ଼ିତ ଜୟ ସ୍ତମ୍ଭ ପ୍ରୋଥିତ ହେଲା, ଏହି ଦୁଇଟି ନାମକୁ କାବ୍ୟରେ ଯେପରି ଚମତ୍କାର ଭାବେ କବି ବ୍ୟବହାର କରି କଥାଟିକୁ ସତ୍ୟତାର ରୂପ ଦେବାକୁ ଚେଷ୍ଟା କରିଛନ୍ତି, ସେପରି ଚେଷ୍ଟା କ୍ୱଚିତ୍ କବିଙ୍କର ଦେଖାଯାଏ । ଉତ୍କଳର ଘାଟ, ପଥଘ, ନଈ ନାଳଠାରୁ ଆରମ୍ଭ କରି ପ୍ରଧାନ ରାଜା ମହାରାଜା ପର୍ଯ୍ୟନ୍ତ ସେ ସାହିତ୍ୟର ଉପଯୋଗୀ କରିଅଛନ୍ତି । ଉଷା କାବ୍ୟରେ ବାଲେଶ୍ୱର ଓ ତହିଁ ପାର୍ଶ୍ୱବର୍ତ୍ତୀ ସ୍ଥାନଗୁଡ଼ିକର ବର୍ଣ୍ଣନା ପୁଣି ନାମୋପଯୋଗୀ କିମ୍ବଦନ୍ତୀ ଇତ୍ୟାଦିର ବ୍ୟବହାର କରି ଉକ୍ତ ଜିଲ୍ଲାର ପ୍ରାଧାନ୍ୟ ବଢ଼ାଇଅଛନ୍ତି । ଏହି ହିସାବରେ ରାଧାନାଥ ଆମ୍ଭମାନଙ୍କର ଜାତୀୟ କବି । ଉଷାଙ୍କ ସଙ୍ଗେ ଧାଇଁବାକୁ ଯେଉଁ ଯେଉଁ ଦେଶରୁ ରାଜକୁମାରମାନେ ଆସିଥିଲେ ସେହି ସେହି ଦେଶର ବସ୍ତୁର ବର୍ଣ୍ଣନା କରିବା ପୂର୍ବରୁ କବି କହିଛନ୍ତି —

ଯେଉଁ ଯେଉଁ ଦେଶ ସେ କଥା କାହାର ନାହିଁ ତ ଜଣା,
ବସ୍ତୁ ତ ଗଢ଼ିଭୁ ଜଙ୍ଘାର ଅଣୁ ତା କବି କଳ୍ପନା ।

କାବ୍ୟର ଏହି ବିଭାଗର ପାଦ ଟୀକାରୁ ଜଣାଯାଏ, ଜାତୀୟ କବି କିପରି ଦେଶର ପ୍ରତ୍ୟେକ ସ୍ଥାନର ହିସାବ ରଖୁଥିଲେ । ପୁଣି କେଉଁ ସ୍ଥାନ କି ନିମନ୍ତେ ପ୍ରଧାନ ସେ ଜାଣିଥିଲେ । ତାହାର ଏହି ସମ୍ବାଦ-ନୀତିକୁ ସାହିତ୍ୟିକ ବର୍ଣ୍ଣନା ଦ୍ୱାରା ସେ ରୂପ ଦେଇପାରିଛନ୍ତି । ତେଣୁ ରାଧାନାଥ ଉଷାଙ୍କର ପ୍ରତିଜ୍ଞାକୁ ପେଟଭରର କାରଣ ଦେବାକୁ ଚେଷ୍ଟା କରିଛନ୍ତି ଯେତେଥର ଅଦ୍ଭୁତଚାର୍ଯ୍ୟ ଦେଖାଇଛନ୍ତି । ଉଷାଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା ସଙ୍ଗେ ସଙ୍ଗେ ତାଙ୍କର ଶୌର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ କବି ଗୋଟିଏ ନୂତନ ତଥ୍ୟ ଉଦ୍ଭାବନ କରିବାକୁ ଚେଷ୍ଟା କରିଛନ୍ତି—ଯଥା

ଯୁବତୀ ସୁଲଭ ସୌନ୍ଦର୍ଯ୍ୟ ମିଶ୍ରିତ ଶୌର୍ଯ୍ୟ ପ୍ରଖର
ବେନି ଗୁଣ ମିଳିତରେ ରମଣୀ କି ରୁଦ୍ର ସୁନ୍ଦର ।

ରୌଦ୍ର ଓ ସୌନ୍ଦର୍ଯ୍ୟର ବିରୋଧ ଭାବ କବିଙ୍କର ଅଜଣା ନଥିଲା । ମାତ୍ର ସେ ଏହି ଦୁହିଁଙ୍କୁ ମିଶ୍ରିତ କରି ଗୋଟିଏ ନୂତନ ଭାବ ପ୍ରଦାନ କରିବାକୁ ଚେଷ୍ଟା କରିଥିଲେ । ସେହି ଚେଷ୍ଟା ତାଙ୍କର କୃତକାର୍ଯ୍ୟ ହୋଇ ନଥିଲା । ସେ ଏହା ଭାବି ନଥିଲେ, ତେଣୁ ସେ କହୁଛନ୍ତି—

ସର୍ବ ଶୋଭାଧାର ରମ୍ୟାଧାରଠାରୁ ମଧୁର ଘେନ
ବିରୋଧ ପାଷାଣରୁ ମଧୁର ମିଳନେ ମିଳିଲେ ବେନି ।

ରାଧାନାଥଙ୍କର Association of ideas ଅତି ଚମତ୍କାର । ସେ ସ୍ୱଦେଶର କିମ୍ବଦନ୍ତୀ, ପୁରାତନ ଓ ଐତିହାସିକ ନାମ ପୁଣି ପ୍ରାକୃତିକ ଦୃଶ୍ୟାବଳୀକୁ ସାହିତ୍ୟାକାର ପ୍ରଦାନ କରିବାରେ ପଥ ପ୍ରଦର୍ଶକ । ଦୁହିତାଙ୍କର ପ୍ରତିଜ୍ଞାକୁ କାର୍ଯ୍ୟରେ ପରିଣତ କରିବାକୁ ରାଜା, ମନ୍ତ୍ରୀ କିମ୍ବା ରାଣୀଙ୍କର ଟିକିଏ ହେଲେ ଦ୍ୱିଧା ହୋଇ ନଥିଲା—ଏହା ବଡ଼ ଆଶ୍ଚର୍ଯ୍ୟର କଥା । ସେ ଯାହାହେଉ ରାଜାଙ୍କ ଆଦେଶରେ ଗୋଟିଏ ଦିଗ ଅଧିକ ମୂଲ୍ୟବାନ୍ କରିଅଛନ୍ତି ଏଥିରେ ସନ୍ଦେହ ନାହିଁ । ଭୂଗୋଳ, ଇତିହାସ, ପୁରାଣ କିମ୍ବଦନ୍ତୀ ସବୁ ଏପରି ବର୍ଣ୍ଣନାରେ ସ୍ଥାନ ପାଇଛି । କିନ୍ତୁ ତାହାରକୁ ଗୌଣ ମନେକରି ଛାଡ଼ିବାକୁ ପ୍ରସ୍ତୁତ ନୁହନ୍ତି । ଗୋଟିଏ ଦୃଷ୍ଟାନ୍ତରୁ ସବୁ ଜଣାଯାଏ । "ଯାଜପୁରରୁ ଧାମନଗର ଯିବା ମାର୍ଗରେ ସୁବିସ୍ତୃତ ଗୋହିରା କ୍ଷେତ୍ର ଅବସ୍ଥିତ । ମୁକୁନ୍ଦଦେବ ଏହିଠାରେ ଯୁଦ୍ଧରେ ହତ ହୋଇଥିଲେ ବୋଲି ଐତିହାସିକ କିମ୍ବଦନ୍ତୀ ଅଛି ।" ଏହି ଅକବିକ ଶିଳ୍ପୀଙ୍କ ହସ୍ତରେ କପର ବିଶୁଦ୍ଧ ଓ ରମଣୀୟ ସ୍ୱର୍ଣ୍ଣାଳଙ୍କାର ହୋଇପାରିଛି ଦେଖିବାର ଯୋଗ୍ୟ ।—

"ବୈତରଣୀ ଅଙ୍ଗ ବନ୍ଧଣ ଦେଉଛି ପ୍ରସନ୍ନ ନୀର,
ଧୋଉଅଛନ୍ତି ଯହିଁ ମଙ୍ଗଳବାସିନୀ କ୍ଷେତ୍ର ଗୋହିର ।
ନମିତେ ଉତ୍ତର—ବାଲେ ଗଡ଼ିଲ ସବେ ଦେବତା ଉଭ
ବାଜୁବାଜୁ ଯହିଁ କଳାପାହାଡ଼ର ରଣ ଦୁନ୍ଦୁଭି;
ନମିତେ ସକଳ ଯହିଁ ଉତ୍କଳର ଗୌରବ ଆଶା
ଲକ୍ଷବୀର ରକ୍ତେ ଉତ୍କଳର ହେଲ ଭାଗ୍ୟ ମୀମାଂସା ।

ବାଲେଶ୍ୱର ନଗରର ଅଂଶ ବିଶେଷର ନାମ ନୁଲୁପୁର । ତେଣୁ ରାଧାନାଥ ଉକ୍ତାଙ୍କ ପିତାଙ୍କ ନାମ କରିଛନ୍ତି ନୁଲୁ । ସେହିପରି ଗୋଟିଏ କିମ୍ବଦନ୍ତୀର ଅନୁସରଣ କରି ସେ ଶୋଣିତପୁରର ବର୍ଣ୍ଣନା ଦ୍ୱାରା ରାଜକୁମାରଗଣଙ୍କ ଶେଷ ଦଶା ବର୍ଣ୍ଣନ କରିଛନ୍ତି ।

ଏହିରୂପେ ରାଜସୁତେ ନୁଲୁପୁର ଦକ୍ଷିଣ ଭାଗେ
ହତହେଲେ ଦେବୀ ବରାଳୀ ଚଣ୍ଡୀ ପ୍ରତିମା ଆଗେ ।
ଅଦ୍ୟାପି ସେ ସ୍ଥଳୀ ଅସଂଖ୍ୟ କିଶୋର ନୃପ ସୂନୁର
ଶୋଣିତେ ପଙ୍କିଳ ହୋଇ ବୋଲାଉଛି ଶୋଣିତପୁର
ସବୁ ରାଜସୁତ—ଦର୍ପ ଏଥି ଯେଣୁ ହେଲାଟି ଚୂନା
ଦର୍ପ ଦର୍ପ ହର—ସ୍ଥଳୀ ବୋଲାଉଛି କଥା ପୁରୁଣା ।

ରାଧାନାଥ କର୍ମଜୀବନରେ ଅନେକ ଗଡ଼ଜାତ ଭ୍ରମଣ କରିଥିଲେ । ସେପରି ଭ୍ରମଣ ସମୟରେ ତାଙ୍କର ପ୍ରକୃତି ସହିତ ଘନିଷ୍ଠ ପରିଚୟ ଘଟିଥିଲା । ନବ୍ୟ ଶିକ୍ଷିତ ସହରବାସୀ କର୍ମଗୃହୀଙ୍କ ପକ୍ଷେ ଅରଣ୍ୟାନୁଭୂତି ପାଇବା ଦୁଷ୍କର । ମାତ୍ର ରାଧାନାଥ ବନ ବର୍ଣ୍ଣନାରେ ସିଦ୍ଧହସ୍ତ । ବ୍ୟକ୍ତିଗତ ଅନୁଭୂତି ଓ ପ୍ରାକୃତିକ ସୌନ୍ଦର୍ଯ୍ୟ ପିପାସା ଏପରି ଚମତ୍କାର ବର୍ଣ୍ଣନାର ଦୁଇ ବିଶିଷ୍ଟ କାରଣ ହୋଇପାରେ । ମହୁଲ ମାଳତୀ ମାଳାମୂ ଶାଳତା କେବଳ ନୁହେଁ । ଉତ୍କଳର ବନ ଗିରି ଓ ଦ୍ୱୀପସମୂହ ମଧ୍ୟ ରାଧାନାଥଙ୍କ ବିଶେଷ ତୂଳିରୁ ବାଦ ଯାଇନାହାନ୍ତି । ଦଶବେଶ

ବୃତରେ ରହି ସୁଦ୍ଧା ଯେ ଗୋପୀନାଥ ମହେନ୍ଦ୍ରର ଶୋଭା ବର୍ଣ୍ଣନା କରିବାକୁ ସକ୍ଷମ, ତାଙ୍କ ପକ୍ଷେ ଅନ୍ତ ନାଟକଟିର ଅଚିରଶ୍ରୈୟ ଗୋପୀନାଥଙ୍କ ପାର୍ଶ୍ୱବର୍ତ୍ତୀ ବନ ବର୍ଣ୍ଣନା କଠିନ ନୁହେଁ ।

ବିଚ୍ଛିନ୍ନ ଝଙ୍କାରିତ ମହାଅରଣ୍ୟରୁ ଥିଲା ସେ କାଳେ
ସଦା ସୁଶୀତଳ ନାନା ବନସ୍ପତି—ବ୍ରତତୀ ମାଳେ

ମହାଘୋର ବନ ପଶିବାକୁ ଯହିଁ ରବିଚନ୍ଦ୍ର କର
ପୁଞ୍ଜିତ ହୋଇଛି ସେଠାରେ କୃଷ୍ଣପକ୍ଷ ଅନ୍ଧାର ଯାକ

ଅଶନ, ଶିଂଶପା, ବକୁଳ, କଦମ୍ବ, କୁଟଜ, ଶାଳ
ହରୀତକୀ, ନୀପ, ଧାତ୍ରୀ, ବିଭୀତକୀ, ଧବ ପିପ୍ପଳ

ଏ ଅବା ବହୁତ ପାଦପେ ଗହଳ ଥିଲା ସେ ସ୍ଥଳୀ
ସର୍ବେଜ ଅବୃତ ଠାବେ ଠାବେ ଥିଲା ସଜଳ ଜଳୀ

ଅଦୂରେ ତାହାର ନଳବନାକୀର୍ଣ୍ଣ ବିସ୍ତୀର୍ଣ୍ଣ ସର
ନୀଳ ଅମ୍ବରଣ ନାଳମାରେ ଜଣେ କଳା ଭ୍ରମର,
ଯାହିଁ ନୀର ପାଣ୍ଡୁ—ବର୍ଣ୍ଣ ପଦ୍ମ ପଦ୍ମକେଶର ଧୂଳି
ତାରକିତ ଯାହିଁ କରନ୍ତି ପ୍ରସୂନେ ପାଣି ଶିଉଳି, ଇତ୍ୟାଦି ।

ଏଣେ ଅହଲ୍ୟା ଜାହାଣୀର ସ୍ୱର୍ଣ୍ଣ କମଳ, ତେଣେ ମୟୂରଭଞ୍ଜ ରାଜବଂଶର ପୁରାତନ କିମ୍ବଦନ୍ତୀ ଉଭୟେ ଏକାପରି ଚିତ୍ତାକର୍ଷକ ଓ ଲୋଭନୀୟ । କବି ଗୁରୁ ଉଭୟର ସମାବେଶ କରି, ଅହଲ୍ୟା କଥାର ବୈଦେଶିକତା ଓ ବିଧର୍ମତା ତ୍ୟାଗ ଏବଂ ମୟୂରଭଞ୍ଜର ଇତିହାସ ପ୍ରତିଷ୍ଠା ସମାନଭାବେ କରିପାରିଅଛନ୍ତି । ଅହଲ୍ୟା ପ୍ରେମପିପାସୁ ମିଳନପଥ ପ୍ରେମ ଓ ସୌନ୍ଦର୍ଯ୍ୟର ଅଧିଷ୍ଠାତ୍ରୀ ଦେବୀଙ୍କୁ ତାଙ୍କ ମନ୍ଦିରରେ ଉପାସନାକରି ପରିଶେଷରେ ଉନ୍ନୋଟି ସ୍ୱର୍ଣ୍ଣଫଳଲାଭ

କରିଥିଲେ । ଉକ୍ତ ଫଳ ଦାନ ପୂର୍ବରୁ ସମୁଦ୍ର ନୀଳବକ୍ଷରୁ ଉତ୍‌ଥିତ ପଦ୍ମର ଭିନସ ଦେବୀଙ୍କ ଆଗମନର ଚିତ୍ର ଅତୀବ ମନୋହର ।

Between the fading of night and the drawing of the new-day, the south grew shining bright with the passage of a wonderful cloud that tie up sea and sky as it floated on the crests of the advancing billows. Vernas was on her way to her temple.

ତା' ପରେ ମିଲନର୍ତ୍ତନ ତିନୋଟି ସୁବର୍ଣ୍ଣଫଳ ଲାଭ କରି ଆଟଲାଣ୍ଟା ସହିତ ଦୌଡ଼ରେ ଯୋଗ ଦେବାକୁ ଗମନ କଲେ । ଏହି ମନୋହର ଛବିର ଭାରତୀୟ ଅନୁକରଣ ଏଡ଼େ ସୁଦକ୍ଷ ଓ କୁଶଳ ଭାବେ ହୋଇଛି ଯେ ସେହି ଚିତ୍ର ସକାଶେ ରାଧାନାଥ William Morrisଙ୍କ ଠାରେ ଋଣୀ ବୋଲି କହିବାକୁ ମନ ଯାଉନାହିଁ । ସ୍ୱର୍ଣ୍ଣଫଳ ଲାଭ ବ୍ୟତୀତ ଦୁଇଟି ବର୍ଣ୍ଣନାରେ ଅନ୍ୟ କୌଣସି ସାଦୃଶ୍ୟ ନଥିଲେହେଁ ଉଭୟ ବର୍ଣ୍ଣନା ଏକାପରି ମନୋମୁଗ୍ଧକର । ଭିନସଙ୍କୁ ତ୍ୟାଗକରି ସ୍କନ୍ଦଙ୍କ ଆଶ୍ରୟ ନେବାଦ୍ୱାରା କବିଗୁରୁଙ୍କ ମୟୂରଭଞ୍ଜ ବଂଶର ପୂର୍ବ ଇତିହାସ ସମ୍ବନ୍ଧେ ଗୋଟିଏ ମନୋହର କାହାଣୀ ରଚନା କରିବାର ସୁଯୋଗ ମିଳିଛି । ସ୍କନ୍ଦଙ୍କ ବାହନ ମୟୂର ଓ ସେହି ମୟୂରକୁ ଶବରମାନଙ୍କଠାରୁ ରକ୍ଷାକରି ସ୍କନ୍ଦଙ୍କର ଜୟନ୍ତ ପ୍ରିୟପାତ୍ର ହେବା ସଙ୍ଗେ ସଙ୍ଗେ ବାହନଗତ ବଂଶକୁ ମୟୂରଧ୍ୱଜ ବଂଶରେ ନାମାଙ୍କିତ କରିଛନ୍ତି ପୁଣି ଏହି ବର୍ଣ୍ଣନା ଦ୍ୱାରା ମୟୂରଧ୍ୱଜ ବଂଶ ଭଞ୍ଜନ ମୟୂରଭଞ୍ଜ ବଂଶର ଉଦ୍ଭବର ସମ୍ବନ୍ଧେ ପଥ ପରିଷ୍କାର

କରିଯାଉଛନ୍ତି, ସେତେବେଳେ ଜୟନ୍ତଙ୍କ ମନରେ ଉଷାର ସ୍ଥାନ ନଥିଲା । ସେ ଅବଶ୍ୟ ସେତେବେଳେ ବର ମାଗିବେ ବୋଲି କହି ସ୍କନ୍ଦଙ୍କଠାରୁ ବିଦାୟ ଗ୍ରହଣ କରିଅଛନ୍ତି । ମୟୂର ବାହନ ସ୍କନ୍ଦଙ୍କ ବର୍ଣ୍ଣନାରେ ବୀରତ୍ୱ ଓ ସୌନ୍ଦର୍ଯ୍ୟର ସମାବେଶ ହୋଇ ଅପୂର୍ବ ଦେଖାଯାଉଛି ଅଦ୍ଭୁତ କରୁଅଛି ।

ବନଦେବୀ ଅନୁରୋଧେ ଶିଖିଧ୍ୱଜ ଶୈଳେ ଓହ୍ଲାଇ
ଛାଡ଼ିଦେଲେ ଶିଖି କଳାଙ୍ଗୀ ନିର୍ଝରେ ଚରିବା ପାଇଁ
ସ୍ନେହବଶତ ବନ ସ୍ୱେଚ୍ଛାଶ୍ରୀ ଦେବା ପାଇଁ ସନ୍ତୋଷେ,
ଉଭାହୋଇଲେ ଦେବ ନିଜ ଦିବ୍ୟରୂପେ ଜୟନ୍ତ ଆଗେ,
ମାଡ଼େ କି ଉତ୍କୀର୍ଣ୍ଣ କରୁଣ ଏମନ ଅପୂର୍ବ ଶରୀରେ
ଗୌର ଗ୍ରୀବା ଦେଶେ କୃଷ୍ଣ କେଶଗୁଚ୍ଛ ଶୋଭେ କୁଞ୍ଚିତେ,
ଅଟୋପାଟଳ ଗୁଣ—ଧନୁ—ତୂଣ ବୀର—ଭଙ୍ଗୀରେ ଉର
ଦେଇ ଖଡ୍ଗ ବାମ କରେ ଧରିଛନ୍ତି ଶରନିକର ।
ସ୍କନ୍ଦ ପୃଷ୍ଠେ ରୂପ—ମୃଗେଖ ଶରଙ୍କ—ପଦନିଚୟ
ଦେଖୁ ପ୍ରଭା ସ୍ଫୁରେ ବନଭୂମି ହେଲେ କନକମୟ ।

ଷଡ଼ାନନଙ୍କର ଆବିର୍ଭାବ ଅଭୁଥରେ ଭକ୍ତର ବିପତ୍ତିବେଳେ ହୋଇଥିବ, ନୂତନପୁର ରଙ୍ଗସ୍ଥଳୀରେ । ସେଠାରେ ଆକାଶରେ ରହି ମାନସ ସରୋବରରୁ ସ୍ୱର୍ଣ୍ଣ ପଦ୍ମ ତୋଳିଦିନି ଜୟନ୍ତ ହାତକୁ ବଢ଼ାଇଦେଇ ଅନ୍ୟର ଅଜଣାରେ ଆକାଶ ମାର୍ଗରେ ଉଷା ଜୟନ୍ତ ଦୌଡ଼ ନିରୀକ୍ଷଣ କରିବାକୁ ଲାଗିଲେ । ଏହା ସ୍ୱାମୀଙ୍କ ଭକ୍ତପ୍ରତି ଅନୁଗ୍ରହରୁ ବଳିଯାଉଛି । ମାତ୍ର ମିଳନପଥ ଓ ଅନ୍ତାଳରୋପରେ ମିଳନପଥରେ ଅନ୍ତସ୍ଥାର ବିଚ୍ଛେଦର ବର୍ଣ୍ଣନା ନାହିଁ । କିନ୍ତୁ ସ୍କନ୍ଦଙ୍କର ଦେବତାଙ୍କ ଅନୁଗ୍ରହ ଲାଭ କରି ମଧ୍ୟ ଜୟନ୍ତ କନ୍ୟା ଉଷାଙ୍କ ପକ୍ଷେ ମର୍ତ୍ତ୍ୟଭୂମିର ପ୍ରେମ ରାଜ୍ୟରେ ବିଚରଣ କରିବାକୁ ଅସମର୍ଥ ।

ଏଥିପାଇଁ ଦାସୀ କାଳୀଙ୍କ ଅଭିଶାପ ଓ କବିଙ୍କ ଜୀବନରେ ଗୋଟିଏ ପ୍ରତ୍ୟକ୍ଷ ଘଟଣାର ଅନୁଭୂତ । ଏପରି ବିୟୋଗାନ୍ତକ କାବ୍ୟ ଲେଖି ତା'ପରେ ସେହି ବିୟୋଗର କଷଣକୁ ଦୂର କରିବା ନିମନ୍ତେ କାଳୀ ଅଭିଶାପର ଅବତାରଣା କରିବା ଦ୍ୱାରା କାବ୍ୟର ସୌନ୍ଦର୍ଯ୍ୟରେ ଅତିଶୟ ଲାଘବ ଘଟିଅଛି ।

ଉଷାକାବ୍ୟ ଓ ଅଷ୍ଟାଲଣ୍ଣା କାହାଣୀରେ ପ୍ରେମର ଆରମ୍ଭ ଅତି ଅଳମ୍ବନରେ ଘଟିଛି । ଉଷାଙ୍କ ବାଲ୍ୟଜୀବନ ଓ କୈଶୋର ପାରିଧିପୂର୍ଣ୍ଣ । ସେ ସମୟରେ ତାଙ୍କର ପ୍ରେମ ଉଦ୍ରେକ ହେବା ନିମନ୍ତେ ସମୟର ଅଭାବ ।

ପାରିଧିକ ଶିକ୍ଷେ ହେଲେ ନରବର ଅସେହୁ ଦନ୍ତୀ
କୁମାରୀ କି ସଙ୍ଗେ ଅମାରରେ ଯେନ ଶିକ୍ଷେ ଦୁରନ୍ତ
ପ୍ରତିଦିନ ଉଷା ଏହିରୂପେ ଯାଇ ନୃପ ସଦନେ
ଦେଖୁଥାଇ ବନେ ମୃଗୟା କୌଶଳ ନବସ୍ମ ମନେ;
ଦେଖୁଥାଇ ବନ ପଶୁ ପକ୍ଷୀଙ୍କର ଚେଷ୍ଟା ଇଙ୍ଗିତ
ସାହସ, ସାଧ୍ୱସ, ସ୍ନେହ, ମାୟା ଆଦ ଯନ୍ତି ସୂଚିତ ।
କୌତୁକେ କାନନେ କହୁଥାଇ ମନେ ଗଜେନ୍ଦ୍ର ସୁତା
ମୃଗୟୁ କୁଳର ଦେଶ କାଳ ଜ୍ଞାନ ହସ୍ତ ଲଘୁତା
ନିତ ଦେଖି ରଙ୍ଗ ଏହିରୂପେ ମଞ୍ଚୁ ହସ୍ତୀ ଉପରୁ
ମୃଗୟା ଦୁଃଖକୁ ଶ୍ଳାଘ୍ୟ ମଣିଲ ସେ ଗୃହ ସୁଖରୁ ।

ଯୌବନ ସୀମା ଛୁଇଁଲା ଉତ୍ତାରୁ ମଧ୍ୟ ଉଷାଙ୍କର ପାରିଧିଲୀଳା ଶେଷ ହୋଇ ନଥିଲା ।

ଅନୁକ୍ଷଣ ଶସ୍ତ୍ର-ଶିକ୍ଷା ମୃଗୟାରେ ହେଲା ସେ ରତ,
ସଖୀ ସଙ୍ଗେ ଶସ୍ତ୍ର ହସ୍ତେ ଭ୍ରମୁଥାଇ ବନ ପର୍ବତ ।

ଏହାର ଫଳ ସ୍ୱରୂପ ଯେ—

ଦଗ୍ଧ ହେଲ ବହୁ ମୃଗାକ୍ଷୀ ମୃଗୟା—ଅନୁସରଣେ
ଫସାରେ ତା ସଙ୍ଗେ ଗତିବେଗେ ଭେଦ୍ଧ ନଥିଲେ କଣେ ।

ଉଷା ଚରିତରେ ରୌଦ୍ର ସୌନ୍ଦର୍ଯ୍ୟର ସମ୍ମିଶ୍ରଣ ହେତୁ ତାହାର (ଯେଉଁ ସ୍ୱୟଂ ପ୍ରତିଜ୍ଞା କରାଗଲା) ସେହି ପ୍ରତିଜ୍ଞାରେ ପ୍ରେମର ଚିହ୍ନ ନଥିଲା । ଉଷା ଜାଣିଥିଲା ତା ସଙ୍ଗେ ବେଦ୍ଧହେଲେ ଧାଇଁ ପାରିବେ ନାହିଁ ଏବଂ ଯେଉଁମାନେ ଧାଇଁବାକୁ ସାହସ କରିବେ ସେମାନଙ୍କର ମୃତ୍ୟୁ ସୁନିଶ୍ଚିତ । ସୁନିଶ୍ଚିତ ମରଣପ୍ରାପ୍ତ କେଉଁ ରାଜକୁମାରଙ୍କ ପ୍ରତି ଅନୁରକ୍ତ ହେବା ଉଷାପକ୍ଷେ ସମ୍ଭବ ? ଭୀଷଣ ପ୍ରତିଜ୍ଞା ଫଳରେ ଶତ ଶତ ରାଜପୁତ୍ର ପ୍ରାଣ ହରାଇଲେ । "ଚିତ୍ର ଭାନୁର ପତଙ୍ଗପରି ସେମାନେ ନାନା ଦେଶୁ ଆସି ନୃତ୍ୟପୁରେ ସେମାନଙ୍କର ଅଙ୍ଗ ଢାଳିଦେଲେ । ଫଳ ଏତିକି ହେଲା ଯେ—

ସ୍ୱପ୍ନରେ ଲୋଡ଼ୁ ତହିଁ ସେ ଅବନୀ—ଲୁପ୍ତନଙ୍ଗ
ଦକ୍ଷିଣ ମଶାଣ ରାଜସୁତେ କଲେ ଲୋହେ ତରଂଗ ।

ଏପରି ରକ୍ତମୟ ଭୂମିରେ ପ୍ରଣୟ ବୀଜର ଅଙ୍କୁରୋଦ୍‌ଗମ ହେବା ଅସମ୍ଭବ । ଶତ ଶତ ବୀରଙ୍କର ମୃତ୍ୟୁଦଣ୍ଡ ଦେଇ ଉଷା ନୃତ୍ୟପୁରକୁ ଗୋଟିଏ ମହାଶ୍ମଶାନ କରିପକାଇଲେ, ତଥାପି ଉଷାଙ୍କ ଚରିତରେ ଟିକିଏ ଆଞ୍ଚ ଲାଗିଲା ନାହିଁ—ଏହା ଅତି ଆଶ୍ଚର୍ଯ୍ୟଜନକ । କବି ନାୟିକାଙ୍କ ପ୍ରତିଜ୍ଞାର ଅସାର ଫଳକୁ ଟିକିଏ ଉତ୍ତମ ରଙ୍ଗରେ ଚିତ୍ରଣ କରିବାକୁ ପ୍ରୟାସ କରିଅଛନ୍ତି ।—ଯେ ଯେତେ ପାପ କରୁ, ପରିଶେଷରେ ଦୈବ ଉପରେ ଦାୟିତ୍ୱ ଭାର ଲଦି ପାରିଲେ ସବୁ ଖୁନ୍ ମାଫ ହୋଇଯାଏ । ଉଷାଙ୍କୁ ଏହି ରକ୍ତପଙ୍କିଳ ପାପରୁ ମୁକ୍ତ କରିବାକୁ ଯାଇ କବି କହୁଛନ୍ତି—

ରୂପ ଗୁଣ ବଳେ ନରକୁଳେ ଧନ୍ୟ ଥିଲେ ସକଳେ
ମାତ୍ର ରୂପ-ଗୁଣ-ଫଳେ କି ଲଭିଛି ଲଖନ ଛଳେ ?
ବଳୀ ହୋଇ ଦୈବ ବିଧାନକୁ କିଏ କରିବ ଆନ
ମହାବଳୀଠାରୁ ବଳୀୟର ପୁଣି ଦୈବବିଧାନ
ଏହିରୂପେ ରାଜ-ସୁତେ ନୃତ୍ୟପୁର ଦକ୍ଷିଣ ଭାଗେ
ହତ ହେଲେ ଦେବୀ କାଳୀ ବିଜୟ—ପ୍ରତିମା ଆଗେ ।

ଉଷା ତାଙ୍କ ଭୀଷଣ ପ୍ରତିଜ୍ଞାରେ ହାରିଯିବା ରାଜପୁତ୍ରମାନଙ୍କ ପ୍ରତି ଦଣ୍ଡବିଧାନ କରିବାର ଆବଶ୍ୟକତା ବୁଝିହୁଏ ନାହିଁ । ପୁରାତନ କାଳୀନ ସ୍ୱୟମ୍ବରରେ ଯେଉଁ ସବୁ ପଣ ରଖା ଯାଉଥିଲା ସେହି ପଣରେ ଏପରି ମୃତ୍ୟୁ ଦଣ୍ଡର ବିଧାନ ଦେଖାଯାଏ ନାହିଁ । ଦ୍ରୌପଦୀ ସ୍ୱୟମ୍ବରରେ ଶତଶତ ରାଜପୁତ୍ର ଲକ୍ଷ୍ୟଭେଦ କରି ନଥିଲେ ସୁଦ୍ଧା ସେମାନଙ୍କୁ ମୃତ୍ୟୁ ଦଣ୍ଡ ଦିଆଯାଇ ନଥିଲା । ସେହିପରି ସୀତା ସ୍ୱୟମ୍ବରରେ ସୁଦ୍ଧା କୌଣସି ରକ୍ତପାତର ଆବଶ୍ୟକତା ନଥିଲା । ଉଷାଙ୍କୁ ଲାଭ କରିବା ଇଚ୍ଛାରେ ଯେଉଁ ରାଜପୁତ୍ରମାନେ ମୃତ୍ୟୁ ମୁଖରେ ପତିତ ହୋଇଛନ୍ତି ସେ ସମସ୍ତଙ୍କର ମୃତ୍ୟୁ ନିମନ୍ତେ ଏବେ ହେଲେ ଉଷା ଦାୟୀ, ନଚେତ ମାଣିକ୍ୟଖମ୍ବର ଭୈରବୀ ମୂର୍ତ୍ତି କାଳୀ ଦାୟୀ । ରାଧାନାଥ ମଧ୍ୟ ଜାଣିଥିଲେ ଯେ ହାରିଯିବା ରାଜପୁତ୍ର-ମାନଙ୍କର ଦଣ୍ଡ ବିଧାନ ନ୍ୟାୟସଙ୍ଗତ ନୁହେଁ । ତଥାପି ସେ ଅଟାଲିକା କାହାଣୀକୁ ଅନୁସରଣ କରି ରାଜପୁତ୍ରଗଣଙ୍କୁ ବଧ କରାଇବାକୁ ବାଧ୍ୟ ହୋଇଥିଲେ । ସେ ତେଣୁ ଏହି ପାପର କଳଙ୍କଟା ଲଘୁ କରିବା ଉଦ୍ଦେଶ୍ୟରେ ହର ତାଣ୍ଡବ ନୃତ୍ୟ ଓ କାଳୀ ଅଭିଶାପ ବୃତ୍ତାନ୍ତର ଅବତାରଣା କରି ଦୈବ ଉପରେ ଦୋଷ ଢାଳିବାକୁ ଚେଷ୍ଟା କରିଛନ୍ତି । ତାହା ବ୍ୟତୀତ ଐହିକ ଭାବେ ବଧଯୁକ୍ତିକୁ ନ୍ୟାୟ ସଙ୍ଗତ କରିବା ଇଚ୍ଛାରେ କହିଛନ୍ତି—

ହାରିଗଲେ ଶିର-ଛେଦ-ଦଣ୍ଡତାର ହେବ ନିଶ୍ଚୟ
ଟାଣପଣ ଶୁଣି ଭୀରୁ—ଜନ ମନ ହେଲା ସଭୟ;
ଯୁବା ବୀରେ ଯେତେ ମାତିଲେ ସମସ୍ତେ ମହା ଉତ୍ସାହେ
ବୀର ବହୁନେ କି ସୁଖ ମୂଲ୍ୟ କେହୁ ଦେବାକୁ ଚାହେଁ ?
ଯେ ସୁଖ ଯେସନ ତା ସୁଖ ତେସନ ସିନା ମହୀରେ
ମୂଲ୍ୟ ଟେକି ମୂଲ୍ୟ ଦେବାକୁ କେବଳ ଜାଣନ୍ତି ବୀରେ ।

ଶତ ଶତ ବୀରଙ୍କ ମୃତ୍ୟୁରେ ଉଷାଙ୍କର କର୍କଶ ହୃଦୟ ସ୍ଥିର ହୋଇ ରହିଥିଲା । ପ୍ରତିଥରବେଳେ ଯେଉଁ ପଶୁରକ୍ତପାତରେ ତାଙ୍କର ଟିକିଏ କ୍ଷୋଭ ଜାତ ହେଉ ନଥିଲା । ନିଷ୍ଠୁରଠାରେ ହେବା ନରପଙ୍କ ଦ୍ୱାରା ମଧ୍ୟ ସେହିପରି ତାଙ୍କ ହୃଦୟରେ ଭିତର କୌଣସି ପରିବର୍ତ୍ତନ ହୋଇ ନଥିଲା । ନାରୀ ପକ୍ଷେ, ଯୁବତୀ ପକ୍ଷେ, ରାଜକୁମାରୀ ପକ୍ଷେ ଏହି ବ୍ୟବହାର, ଏହି ହୃଦୟହୀନତା, ଏହି କର୍କଶପ୍ରାଣତା ଯେପରି ଅସୁଲଭ ଓ ଅସ୍ୱାଭାବିକ ସେପରି କ୍ରୂର ଓ ନିନ୍ଦାର୍ହ । ଶତ ଶତ ବୀରଙ୍କ ରକ୍ତପାତରେ ଉଷାଙ୍କର ମନ ଟଳେହେଲେ ଟଳି ନଥିଲା । ସେ ପୁନର୍ବାର ସାବଧିରତ ହୋଇ ଧନ ଯାଚନ କରିବାକୁ ଲାଗିଲେ । ଉଷା ରାଜକୁମାରୀ ନହୋଇ କୌଣସି ଅରଣ୍ୟ-ବାସୀ ଶବରର ଦୁହିତା ହୋଇଥିଲେ, ତାଙ୍କର ଉକ୍ତ ବ୍ୟବହାରରେ କ୍ଷୁବ୍ଧ ହେବାପାଇଁ ବିଶେଷ କାରଣ ରହନ୍ତା ନାହିଁ । ଉଷା ବିହାର ଶିକାରରେ ବ୍ୟସ୍ତ ଥିଲାବେଳେ "ଜୟନ୍ତ" ଅଙ୍କିତ ଶରଫଳ ସହିତ ତାଙ୍କର ଭେଟ ହୋଇଥିଲା । ସେ ଭାବିଲେ ଜୟନ୍ତ କେହି ଜଣେ ବ୍ୟାଧ । ବ୍ୟାଧ ଅନ୍ୱେଷଣରେ କେତେ ସମୟ ବହି ଉଷା ଗୃହକୁ ପ୍ରତ୍ୟାବୃତ୍ତ ହୋଇଥିଲେ । ସେତେବେଳେ ଉଷାଙ୍କ ପ୍ରାଣରେ କି ଭାବ ଉଦୟ ହୋଇଥିଲା ବାକ୍ୟରେ ଲୁହାପାଇ ନାହିଁ । ମାତ୍ର ସେହି ଘଟଣାଟିର ସ୍ମୃତି ଉଷା ମନରେ ବରାବର ଅଙ୍କିତ ହୋଇ

ରହିଥିଲା । ଜୟନ୍ତଙ୍କୁ ଉଷା ରଙ୍ଗ ସ୍ଥଳରେ ଦେଖି ବିସ୍ମିତା ହେଲା । ତାହାର ହୃଦୟରେ ବଧୂର ଗତିରେ ଶୋଣିତ ପ୍ରବାହିତ ହେବାକୁ ଲାଗିଲା । ସେ ଶତ ଶତ ରାଜପୁତ୍ର ବୀରଙ୍କ ମରଣର କାରଣ ହୋଇ ନାରୀଗଣରେ ପ୍ରଣୟ ପ୍ରସଙ୍ଗକୁ ମନରୁ ଦୂର କରିଥିଲା । ମାତ୍ର ହଠାତ୍ ଜୟନ୍ତ ଦର୍ଶନ ମାତ୍ରେ ଉଷାର ମନ ନିଜ ଅଯତ୍ନରେ ବଦଳିଲା ନାହିଁ । ଅଟଲାଣ୍ଟା କଥାରେ ମଧ୍ୟ ଠିକ୍ ଦୌଡ଼ ଆରମ୍ଭ ହେବା ପୂର୍ବରୁ ଅଟଲାଣ୍ଟା ମିଲାନିଅନର ପ୍ରେମରେ ପଡ଼ିଥିଲା । ମାତ୍ର ଉଷାର ପ୍ରେମ ତୁଳନାରେ ଅଟଲାଣ୍ଟାର ପ୍ରେମ ନିକୃଷ୍ଟତର । ମିଲାନିଅନର ଚକ୍ଷୁରେ ଦମ୍ଭ ଓ ଆଶାର ଚିହ୍ନ ଦେଖି ଅଟଲାଣ୍ଟାର ମନରେ ବହୁସ୍ପୃ ଜାତ ହୋଇଥିଲା । ସେ ଦେଖିଲା ମିଲାନିଅନ ଅନ୍ୟ ରାଜପୁତ୍ର-ମାନଙ୍କ ଅପେକ୍ଷା ବେଶି ଉତ୍କୃଷ୍ଟ ଓ ସାହସୀ । ମିଲାନିଅନର ସାହସ ଦେଖି ଅଟଲାଣ୍ଟା ଆଶ୍ଚର୍ଯ୍ୟାନ୍ୱିତା ହେଲା ପୁଣି ଭାବିଲା, ମିଲାନିଅନ ହାରିଲେ ସେ ଦୁଃଖିତା ହେବ ।

With a sudden start of surpise she wondered — whether, since he wanted to succeed he might not do so; then she went on to think how sad a fate it would be for such a gallant prince to be slain at the end of the course, she would be sorry, would she not, when she won ?

ଏହିପରି ଭାବ ପ୍ରକୃତ ପକ୍ଷେ ପ୍ରେମକୁ ବଢ଼ାଇ ନପାରେ, ଏହା ଦୟା ବା ପରପ୍ରତି ସହାନୁଭୂତି ନାମରେ ଅଭିହିତ ହେବା ଉଚିତ । ଶେଷରେ ଯେତେବେଳେ ମିଲାନିଅନ ଜୟଲାଭ କରି ଅଟଲାଣ୍ଟାକୁ ପ୍ରେମାଲିଙ୍ଗନ କଲା ସେତେବେଳେ ଅଟଲାଣ୍ଟା ନିଜେ ହାରିଥିବାରୁ ଆନନ୍ଦିତା ହୋଇଥିଲା । ମାତ୍ର ଉଷାର ପ୍ରେମ ଖୁବ୍ ଉଚ୍ଚ ଓ ଉତ୍କୃଷ୍ଟ

ଧରଣୀର ଅଟେ । ଜୟନ୍ତର ରୂପ ଗୁଣରେ ସେ ଏକାବେଳକେ ମୋହିତ ହୋଇ ଯାଇଥିଲା । ତରୁଣୀର ତାର ହୃଦୟରେ ଉଦ୍ଦାମ ପ୍ରେମ ଅଙ୍କୁରିତ ହେଲା । ଅଭିନବ ପ୍ରେମସମ୍ବୋଧନ ବଳେ ତନୁ ପୁଲକିତ ଓ ତାହାର ଅମଳ କପୋଳ ଲଜ୍ଜାପଟଳେ ସୁରଞ୍ଜିତ ହେଲା । ମାତ୍ର କାଳେ ଜୟନ୍ତ ଜାଣି ନପାରେ ଏହି ଆଶଙ୍କାରେ ତାହାର ହୃଦୟରେ ହର୍ଷ ମଧ୍ୟରେ ଘୋର ବିଷାଦ ଉପୁଜିଲା । ଜୟନ୍ତର ସୌମ୍ୟ ରୂପ ଉଷାର ମନ ପ୍ରାଣକୁ କିଣି ନେଇଥିଲା । ସେ ତେଣୁ କହିଲା —

ଏ ରୂପ ମାଟ୍ଟୁସ୍ମୀ କାହିଁ ଥିଲା ପୁଣି ଭୁବନେ ଲୋଡି
ଥରେ ପିଉ, ଅହା, ପାରିବ କି ତାହା ନେଇ ମୁହିଁକି ?

କେବଳ ରୂପହିଁ ଉଷାର ପ୍ରେମ ଉଦୟର ଏକମାତ୍ର କାରଣ ନୁହେଁ । କୃତଜ୍ଞତା ମଧ୍ୟ ତାହାର ଅନ୍ୟ ଏକ ପ୍ରଧାନ କାରଣ । ଜୟନ୍ତ ନାମାଙ୍କିତ ଶରବାଧା ଏବେ ଉଷାର ଦୃଷ୍ଟିଗୋଚର ହେଲା । ସେ ଭାବିବାକୁ ଲାଗିଲା—

ଅହା କାଲି ପ୍ରାଣ ରଖିଥିଲା ବନେ ମୋର ଯେ ଜନ
ଧିକ୍, ଶତ ଧିକ୍, ମୋ ପାଇଁ ଆଜି ସେ ଦେବ ଜୀବନ ।

ସେ ଏବେ ତାହାର ନିଦାରୁଣ ପଣ କଥା ବିଚାରି ନିଜର ଭୁଲ ବୁଝିଲା—

ନୋହିଥିଲେ ଅହା ଏହି ନିଦାରୁଣ ପଣ ପ୍ରଚାର
ଆଦରେ ଏହାକୁ କରନ୍ତିନି କି ମୁଁ ଗଳାର ହାର ।

ଉଷା ପ୍ରେମର ଶେଷ ଓ ଉତ୍କୃଷ୍ଟତମ ପରୀକ୍ଷା ହେଲା ।

ଏ ମଲେ ଏହାର ସଙ୍ଗେ ହେବି ମୁହିଁ ମୃତ୍ୟୁ ଅନ୍ତର
ଯାହା ଥିବ ଏହା ଭାଗ୍ୟେ, ସେହି ଭାଗ୍ୟ ଧ୍ରୁବ ମୋହର ।

ଉଷା ଜାଣିଥିଲା ଯେ ସେ ନିଷ୍ଠୁର ଜୟନ୍ତକୁ ପୌରୁଷରେ ଦବାଇ ଦେବ । ସେ କଣ କରିବ କିଛି ସ୍ଥିର କରି ପାରିଲା ନାହିଁ । ସେ ଯାହା ପଣ କରି ସତ୍ୟ କରିଛି ସେଥିରୁ ନିସ୍ତାର ହେବାର ଉପାୟ ନଥିଲା, ତଥାପି ଉଷାର ଅନ୍ତରତମ ପ୍ରଦେଶରେ ଏହି ଭାବ କାର୍ଯ୍ୟ କରୁଥିଲା ଯେ, କୌଣସି ପ୍ରକାରେ ହେଲେ ଜୟନ୍ତ ଜୟଯୁକ୍ତ ହେଉ । ତେଣୁ ଯେତେବେଳେ "ଜୟନ୍ତର ଜୟ" ରବେ ଅଟାଳି କମ୍ପିଲା ସେତେବେଳେ—

କେ କହୁଚ ହେଲା କିଏ ସେହି ରବେ ବିଶେଷ ସୁଖୀ
ଜୟନ୍ତକୁମାର, କିମ୍ବା ନୃପ ଜେମା ଚନ୍ଦ୍ରମାମୁଖୀ

ଉଷା ମଧ୍ୟ "ଜୟନ୍ତର ଜୟ" ରବରେ ନିଜ ପ୍ରାଣକୁ ମିଶାଇ ନିଜର ଜୟ କଥା ଏକାବେଳକେ ଭୁଲିଗଲା । ତେଣୁ ସେ ନିଜେ ତାହାର ଗଡ଼ ଶିଥିଳ କରିବାକୁ ଲାଗିଲା ।

ଯେ ଯୁବତୀ ଖର— ଗଡ଼ ବଳେ ଜିଣି ପାରେ ଅନିଳ
ସେ କିପାଁ କରୁଛି ଠାବେ ଠାବେ ଅଳ ଗଡ଼ ଶିଥିଳ ?

ଏହି ପ୍ରଶ୍ନର ଉତ୍ତର ଅତି ସହଜ । ଉଷାର ଏକାନ୍ତ ପ୍ରେମହିଁ ଏହି ଶିଥିଳ ଗଡ଼ର ଏକମାତ୍ର କାରଣ । ଏହିଠାରେ ନାରୀର ପ୍ରେମ ତାହାର ଜିଗୀଷାକୁ ଜୟଲାଭ କରିଛି । ଉଷାପରି ଅଭିମାନିନୀ, କୀର୍ତ୍ତିପ୍ରାଣା ଓ କଠୋର ହୃଦୟା ରମଣୀର ହୃଦୟରେ, ପ୍ରେମର ଯେଉଁ ଆଶ୍ଚର୍ଯ୍ୟଜନକ କାର୍ଯ୍ୟ ତାହା ଏଠାରେ ଦେଖାଇ ଦିଆଯାଇଛି । ସ୍ୱର୍ଣ୍ଣ ମୃଣାଳର ଆବଶ୍ୟକତା ଏଠାରେ ଆଦୌ ନାହିଁ । ଅଲୌକିକ କଥା ଅବଲମ୍ବନ କରି ପୁଣି ମଧୁନବର୍ତ୍ତୀଙ୍କ କିମ୍ବଦନ୍ତୀ ଦ୍ୱାରା କାର୍ଯ୍ୟକୁ ମନ୍ଥର କରିବାକୁ ଯାଇ କେବଳ କବି ସ୍ୱର୍ଣ୍ଣ ମୃଣାଳର ଅବତାରଣା କରିଅଛନ୍ତି । ପୁଣି ଏପରି କରିବା ଦ୍ୱାରା ଉଷାର ଅଟଳ ପ୍ରେମକୁ ଅବଳ କରିଛନ୍ତି । କାରଣ ଯେଉଁ ଉଷା ଜୟନ୍ତକୁ ଜୟଯୁକ୍ତ କରିବା

ଅଭିପ୍ରାୟରେ ନଳର ଗତିକୁ ଶିଥିଳ କରିଛି, ତା ସମ୍ବନ୍ଧେ କୁହାଯାଉଛି ।

"ଅଳଙ୍କାର ସ୍ପୃହା ଗ୍ରହିପାରନ୍ତି କି କେବେ ଅଙ୍ଗନା ?"

ଏପରି ଉକ୍ତି ଦ୍ୱାରା କବିବର ଉଷାର ଚରିତ୍ରକୁ ଅକାରଣରେ ଅତି ନିମ୍ନଗାମୀ କରି ଅନ୍ୟାୟ କରିଅଛନ୍ତି । ବୃଦ୍ଧଙ୍କ ଆଶୀର୍ବାଦରୁ ଉଷାର ହୃଦୟରେ ପ୍ରଣୟର ଆବିର୍ଭାବ ହେଲା ଏତେ କଷ୍ଟ କରିବାର ନିଷ୍ଠି ଥିଲେ ସ୍ୱର୍ଣ୍ଣପଦ୍ମ ପାଇଁ ତାଙ୍କୁ ମାନସ ସରୋବରକୁ ଯିବାକୁ ପଡ଼ି ନଥାନ୍ତା । ସେ ଯାହା ହେଉ, ଉଷା କାବ୍ୟରେ ପ୍ରଣୟ ଜୟଲାଭ କରିଛି ଓ ନାରୀର ପ୍ରଧାନ ଗୁଣରୂପେ ପୂଜା ପାଇଛି ।

ହୀରକ ନ ହେଲା ଜୟନ୍ତର ମନେ ଯେଉଁ ହରଷ
ତାହୁଁ ଶତ ଗୁଣେ ତହୁଁ ହୃଷ୍ଟ ହେଲା ଉଷା ମାନସ ।

× × ×

ଜୟଠାରୁ ତାର ପତ୍ନୀଜୟ ଅତି ପ୍ରିୟ ଅଧିକ
ଜଗତେ ନାରୀରେ ବସ ପୁଣି ପ୍ରେମ ଐନ୍ଦ୍ରଜାଲିକ ।

ଉଷାର ବିମଳ ପ୍ରେମହିଁ ଜୟନ୍ତର ଜୟଲାଭର ପ୍ରଧାନ କାରଣ ।

କୁମାରୀ ସଲଜ୍ଜ-ବଦନ-ସରୋଜ ଦେଖିଣ ସ୍ୱପ୍ନେ
ଜାଣିଲେ ଜୟନ୍ତ କ୍ଷଣ ନାହିଁ ଖାଲି ନିଜ ଉପାୟେ ।

ଜୟନ୍ତର ପ୍ରେମ ଉତ୍କୃଷ୍ଟ ଧରଣର । ସେ ଜଣେ ବୀର, ପାଶବିକ୍ କୁଶଳ, ପିତୃବତ୍ସଳ ଓ ଭକ୍ତିପ୍ରବଣ ରାଜପୁତ୍ର । ଉଷା ସ୍ୱୟମ୍ବର ବାର୍ତ୍ତା ପ୍ରଥମେ ଶ୍ରବଣ କରି ସେ ବ୍ରହ୍ମପୁରକୁ ଯିବାକୁ ଇଚ୍ଛୁକ ହୋଇଥିଲା, ମାତ୍ର ପିତାଙ୍କ ଆଦେଶ ଓ ଗଣକମାନଙ୍କ ଉପଦେଶ ଅନୁସାରେ ତାକୁ ତାହାର ଇଚ୍ଛାକୁ ଏକବର୍ଷ ଦବାଇ ରଖିବାକୁ ହୋଇଥିଲା । ବୀରପକ୍ଷେ ଏପରି ବାନ୍ଧିହୋଇ ରହିବା କଷ୍ଟସାଧ୍ୟ । ତେଣୁ ପାରିଧିରତ ହୋଇ କେତେଦିନ ଅରଣ୍ୟରେ କାଳ କଟାଇବାକୁ ଲାଗିଲା ।

ସେ ବୋଧହୁଏ ଭାବିଥିଲେ ପାଣ୍ଡୁନନ୍ଦନ ବନ୍ଧୁ ଲକ୍ଷଣାର ସ୍ୱୟମ୍ବରରେ ଯୋଗ ଦେବା ନିମନ୍ତେ ସେ ନିଜକୁ ଅଧିକ ଭାବେ ଉପଯୁକ୍ତ ଜଣେ ପାଣ୍ଡବ। ତାହାର ଏହି ଅରଣ୍ୟ ବାସ ସମୟରେ ସ୍କନ୍ଦଙ୍କ ସହିତ ସାକ୍ଷାତ। ସେ ସ୍କନ୍ଦଙ୍କୁ ସେଦୃଷ୍ଟିରେ କୌଣସି ବର ମାଗିନାହାନ୍ତି, ଏଥିରୁ ସ୍ପଷ୍ଟ ହୁଏ, ତାହାର ହୃଦୟରେ ଉଷା ଲାଭ ଆକାଂକ୍ଷା ଉଦ୍ରେକ ହୋଇ ନଥିଲା। ସ୍ୱୟମ୍ବରର ଦୌଡ଼ରେ ଯୋଗ ଦେବା ପାଇଁ ତାହାର ଔତ୍ସୁକ୍ୟ, ଉଷାଲାଭ ପାଇଁ ସେପରି ଲାଳସା ଥିବାପରି ଜଣାଯାଏ ନାହିଁ। ଉଷାଗତପ୍ରାଣ ହୋଇ ଯଦି ଜୟନ୍ତ ଅରଣ୍ୟରେ ଭ୍ରମଣ କରୁଥାନ୍ତା ତେବେ ନିଶ୍ଚୟ ସେ ସ୍କନ୍ଦଙ୍କୁ ତାହାର ହୃଦୟ କଥା କହିବାକୁ ଭୁଲନ୍ତା ନାହିଁ।

ଜୟନ୍ତର ଉଷା ପ୍ରତି ପ୍ରକୃତ ପ୍ରେମ ଉଦୟ ହେଲା, ଉଷା ରୂପ ଦର୍ଶନରେ। ଉଷାର ସୁନ୍ଦର ରୂପ କଥା କେବଳ କର୍ଣ୍ଣରେ ଶୁଣି ଥିଲା, ମାତ୍ର ଏବେ ସେ ନିଜ ଚକ୍ଷୁରେ ସେହି ଅପୂର୍ବ ସୌନ୍ଦର୍ଯ୍ୟର ପ୍ରକୃତ ଛବି ଦେଖି ତାହାର ଚକ୍ଷୁ ଝଲସିଗଲା। ଉଷା ଦର୍ଶନ ପରେ ଜୟନ୍ତର ହୃଦୟରେ ଯେଉଁ ଭାବାବଳି ଉଦିତ ହେଲା ତାହା କବିଙ୍କ ଭାଷାରେ ପାଠକଲେ ଜଣାଯାଏ ଜୟନ୍ତ ପ୍ରଥମ ଦର୍ଶନରେ ଉଷାର ପ୍ରେମରେ ଏକାବେଳକେ ଆବଦ୍ଧ ହୋଇ ଯାଇଥିଲା। ତୁଷ୍ଟିପୁରର ନୈକଟ୍ୟ ହେତୁ ସେହି ଯୁବତୀଟି ନିଶ୍ଚୟ ଉଷା ହୋଇଥିବ ବୋଲି ସେ ଭାବିବାକୁ ଲାଗିଲା। ଏତେ ଦିନଯାଏଁ ସେ ଏହି ଅପରୂପ ସୌନ୍ଦର୍ଯ୍ୟକୁ ନଦେଖି ଥିବାରୁ ନିଜକୁ ଧିକ୍କାର କରି କହିଲା।

ଏତେ ଦିନଯାଏ ଥିଲି ସିନା ମୋର ନୟନ ଭୁଲି,
ଦେଖି ନଥିଲି ତ କେବେ ଏ ଅପୂର୍ବ ରୂପର ଉଷା

ସ୍ୱପ୍ନମଧ୍ୟରେ କରି ଅଛୁ ଯେଉଁ ପଣ ବାଳାରତନ
ଏ ରୂପର ଯୋଗ୍ୟ ଅଟଇ ସିନା ସେ ଦାରୁଣପଣ
ଏ ଟାଣପଣକୁ ଉତର ପୁରୁଷେ ନହେବେ କି ସର
କେଶରିଣୀ ମନେ ଥାଇ କେ ଲଭିବ ବିନା କେଶରୀ ?

ଶେଷୋକ୍ତ ପଂକ୍ତିରୁ ଅନୁମାନ କରାଯାଇ ପାରେ ଯେ, ଜୟନ୍ତ ନିଜକୁ ସେହି "କେଶରୀ" ବୋଲି ମନେ କରିଥିଲେ । ଏପରି ସମୟରେ ଉଷାକୁ ବିପଦସଙ୍କୁଳା ହେବା ଦେଖି ସେ ଶର ନିକ୍ଷେପ କରି ତାକୁ ବଞ୍ଚାଇଥିଲେ । ଉଷା ମଧ୍ୟ ଶୂଳଦ୍ୱାରା ଅନ୍ୟ ଶୂକରଟିକୁ ମାରି-ଦେଲା । ଏ ହେତୁରୁ

ଉଷା ଦିବ୍ୟ ରୂପେ ମୁଁ ମୋହିଥିଲା ଚିତ୍ତ ମୋହର
ସାହସ କୌଶଳ ଦେଖି ହେଲା ପୁଣି ଦ୍ୱିଗୁଣ ଧୀର ।

ମାତ୍ର ସେ ଉଷାର ଚକ୍ଷୁଅନ୍ତରାଳରେ ରହିଥିବାରୁ ଉଷା ଜୟନ୍ତ ନାମାଙ୍କିତ "ଶରଫଳକ" ବ୍ୟତୀତ ଆଉ କିଛି ଦେଖି ପାରିଲା ନାହିଁ । କିଛିକାଳ ନିଜ ରକ୍ଷକଙ୍କର ପ୍ରତୀକ୍ଷା କରି ସେ ଗୃହକୁ ପ୍ରତ୍ୟାବୃତ୍ତ ହେଲା, ମାତ୍ର ଜୟନ୍ତର ଅବସ୍ଥା ବଡ଼ ଶୋଚନୀୟ ହେଲା ।

ପାର୍ଥ ମନ ଶୌର୍ଯ୍ୟ ସୌନ୍ଦର୍ଯ୍ୟ ଯେସନ ଯଦୁ କୁମାରୀ
ଉଷା ସେହିପରି ଜୟନ୍ତର ମନ ନେଲା ହରି ।

ସେ ତେଣୁ ପିତୃ ଉପଦେଶକୁ ଏକାବେଳେକେ ବିସ୍ମରି:—

ରାଜକେମା ପ୍ରେମେ ଉନମତ୍ତ ହୋଇ ସେ ନୃପପୁତ୍ର
ନିଶା ଯୋଗେ ଯାଇ ଉପସ୍ଥିତ ହେଲା ନୃପ ଗୃହରେ

ପ୍ରକୃତରେ ରାଜକୁମାରକୁ ଉଷାର ସୌନ୍ଦର୍ଯ୍ୟ, ସାହସ ଓ କୌଶଳ ଏକାବେଳେକେ ପାଗଳ କରି ଦେଇଥିଲା, ତେଣୁ ରୁଦ୍ର ନୃପତିଙ୍କର ସକଳ ପ୍ରକାର ନିଷେଧ ତା' ପକ୍ଷେ କିଛି କାର୍ଯ୍ୟକାରୀ ହେଲାନାହିଁ ।

ସେ ତାହାର ଦୃଢ ପ୍ରତିଜ୍ଞାରୁ ବିରତ ହେବାକୁ ଉଦ୍ବୁଦ୍ଧ ହେଲା ନାହିଁ—କିନ୍ତୁ ପ୍ରତିଜ୍ଞା ପାଇଁ ସେ ନିଜେ ଦାୟୀ ନୁହେ, କାରଣ—

ଉଷାଗତପ୍ରାଣ, ଉଷା ତାର ଧ୍ୟାନ ଉଷା ତା ଗତ
ଉଷା ନ ଲଭିଲେ ପାରିବ କି ପ୍ରାଣେ ତିଳେ ବରତ ?
ପ୍ରଥମ ଦର୍ଶନ ବେଳୁଁ କରିଥିଲା ମନକୁ ଦୃଢ
କାଳ ସ୍ୱପ୍ନରେ ଅବହେଳେ ବଳା ପ୍ରାଣକୁ ଦୃଢ଼ ।

ଉଷା ବିହୀନ ପ୍ରାଣକୁ ସେ ତୁଚ୍ଛ ମଣୁଥିଲା । ଉଷା ଲାଭ ନକଲେ ମରଣକୁ ସେ ଶ୍ରେୟସ୍କର କୋଲି ଭାବିବାକୁ ଲାଗିଲା ।

ଏ ଭଳି ଜୀବନ ଅପେକ୍ଷା ମୃତ୍ୟୁ ସହସ୍ର ଗୁଣରେ ଶ୍ରେୟସ୍କର, ପ୍ରେମର ଚିହ୍ନ ଆଉ କ'ଣ ଥାଇପାରେ ?

'ଉଷା' କାବ୍ୟରେ ଉଷାର ଜନନୀ ଜଣେ ଉପେକ୍ଷିତା ନାରୀ । ଉଷାଙ୍କୁ ପ୍ରସବ କରିବା ବ୍ୟତୀତ କାବ୍ୟରେ ତାଙ୍କର ଆଉ କିଛି କାର୍ଯ୍ୟ ନାହିଁ । ଉପେକ୍ଷିତା ନାରୀମାନଙ୍କ ପ୍ରତି ଏପରି ଅନ୍ୟାୟ ଆଚରଣ କବିମାନଙ୍କର ଗୋଟିଏ ସାଧାରଣ ଦୋଷ ।

# ଚନ୍ଦ୍ରକଳା

କାବ୍ୟଟି ଅସମ୍ପୂର୍ଣ୍ଣ । ତେଣୁ ତାହାର ସମ୍ୟକ୍ ଆଲୋଚନା କରି ସାରସାର ସମ୍ବନ୍ଧେ ଅଭିମତ ଦେବା କଷ୍ଟସାଧ୍ୟ । ପୂର୍ଣ୍ଣ କାବ୍ୟଟି ହୋଇଥିଲେ ଉତ୍କଳ ସାହିତ୍ୟ ଭଣ୍ଡାରର ଗୋଟିଏ ଅମୂଲ୍ୟମଣି ହୋଇ ରହିଥାନ୍ତା । କାବ୍ୟଟିର ସମ୍ପୂର୍ଣ୍ଣ ଆସ୍ୱାଦନ ଭାଗ୍ୟ ଉତ୍କଳ ବାସୀଙ୍କର ନାହିଁ ଏହା ଅତ୍ୟନ୍ତ ଦୁଃଖର କଥା ।

ଚନ୍ଦ୍ରକଳା କାବ୍ୟଟିର କଥାବସ୍ତୁ କବି କଳ୍ପନା ପ୍ରସୂତ ଅଟେ । ପୌରାଣିକ ଆଖ୍ୟାନ ଉପରେ ନିର୍ଭର ନକରି କଳ୍ପନା ବଳରେ କାବ୍ୟ ରଚନା କରିବା ଶ୍ରୀ ଉପେନ୍ଦ୍ରଭଞ୍ଜ ଉତ୍କଳ ସାହିତ୍ୟ କ୍ଷେତ୍ରରେ ଅତି ଦକ୍ଷତା ଓ କୃତିତ୍ୱର ସହ ଫୁଟାଇ ପାରିଥିଲେ । ସେ ପୌରାଣିକ କାବ୍ୟ ଅପେକ୍ଷା କଳ୍ପିତ ଆଖ୍ୟାୟିକାମୂଳକ କାବ୍ୟ ବହୁତ ଲେଖି ପରବର୍ତ୍ତୀ ଲେଖକମାନଙ୍କୁ ଗୋଟିଏ ନୂତନ ଆଦର୍ଶର ଧାରା ଦେଖାଇ ଦେଇଥିଲେ । ସେହି ପନ୍ଥା ଅନୁସରଣ କରି କବିସୂର୍ଯ୍ୟ ତାଙ୍କ ଜୀବନର ଅବସ୍ଥାନ ସମୟରେ ଚନ୍ଦ୍ରକଳା କାବ୍ୟ ଆରମ୍ଭ କଲେ । ତତ୍ପୂର୍ବରୁ କାବ୍ୟରସିକ ଓ ରସିକାମାନେ ଲବଣ୍ୟବତୀ

ପାଠ କରି ଯେଉଁ ରସୋପଲବ୍ଧି କରୁଥିଲେ ପୁଣି ସେହି ପାଠ ଦ୍ୱାରା ଉକ୍ତ କବିଙ୍କ ଆଦର ସାହିତ୍ୟିକ ସମାଜରେ ଯେପରି ଧାରାବାହିକ ରୂପେ ଚଳି ଆସୁଥିଲା, ସେହି ଆନନ୍ଦ ପ୍ରଦାନ ଓ ଆଦର ଲାଭ କବିସୂର୍ଯ୍ୟଙ୍କ ପରି ଲବ୍ଧପ୍ରତିଷ୍ଠ, ବୀଣାପାଣିଙ୍କ ବରପୁତ୍ର ଲେଖକଙ୍କ ପକ୍ଷେ ଖୁବ୍ ସମ୍ଭବପର ଭ୍ରାତ ଜଳନ୍ତରପୀଠ ରାମଚନ୍ଦ୍ର ଘୋଷରାୟ କବିଙ୍କୁ ଚନ୍ଦ୍ରକଳା କାବ୍ୟ ରଚନା କରିବାକୁ ଅନୁରୋଧ କରିଥିଲେ । ରାଜାଙ୍କର ଅନୁରୋଧ କ୍ରମେ ପୁଣି ନିଜ ଇଚ୍ଛାରେ କବିସୂର୍ଯ୍ୟ ତାହା ଆରମ୍ଭ କଲେ । ଚନ୍ଦ୍ରକଳା ଲେଖିବାକୁ ଯାଇ ସେ ଭଞ୍ଜୀୟ ଆଦର୍ଶ ଅନୁକରଣ କରିଥିଲେ ସତ୍ୟ, କାବ୍ୟଟିର କଙ୍କାଳ ବା ସ୍ଥୂଳ ଭଞ୍ଜୀୟ ଆକାରରେ ଗଠିତ ହୋଇଥିଲା ସତ୍ୟ, ମାତ୍ର କାବ୍ୟର ଭାଷା, ରଚନା ପରିପାଟୀ, ରସ ବିକାଶ ଓ ଅଳଙ୍କାରିକ ଦେହ କବିଙ୍କର ସମ୍ପୂର୍ଣ୍ଣ ନିଜସ୍ୱ ବୋଲି କହିବାକୁ ହେବ । ପୁଣି କେବଳ ଉକ୍ତ ନୃପତି, କାବ୍ୟାଦର୍ଶ ନିମନ୍ତେ କବିଙ୍କ ଅନ୍ତର ଅଧିକ ଦୂର ଯିବାକୁ ଚାହୁଁଥିଲା । ସେ ନୈଷଧାଦି ଉତ୍କୃଷ୍ଟ କାବ୍ୟର ଛାୟା ମଧ୍ୟ ଅବଲମ୍ବନ କରିବାକୁ ପଶ୍ଚାତ୍ପଦ ନଥିଲେ । କାବ୍ୟାରମ୍ଭରେ ସେ ଏହି କଥା ସ୍ପଷ୍ଟ ଭାବେ ବ୍ୟକ୍ତ କରିଅଛନ୍ତି ।

ସରସ ଶ୍ରୀହରଷାଦି ମହାକବିମାନେ
ବିହରିଲେ ମହୋଲ୍ଲସିତ କନକବିମାନେ

ସେ ବିମାନ ତେଜି ସେ ବିମାନ ଅନାଡ଼ା
କଲି ଚନ୍ଦ୍ରକଳା ଗ୍ରନ୍ଥାରମ୍ଭ ସଂକଳ୍ପ ହେ !

କବିଙ୍କର ସଂସ୍କୃତ ସାହିତ୍ୟରେ ଗଭୀର ପ୍ରବେଶ ଥିଲା । ଏହା ନିଃସନ୍ଦେହ ଓ ସର୍ବବାଦୀ ସମ୍ମତ । ସଂସ୍କୃତ ଭାଷାରେ ତାଙ୍କର କୃତିରୁ ଚମ୍ପୂ, କାବ୍ୟସ୍ଥିତ ସଂସ୍କୃତ ପଦ୍ୟାବଳୀରୁ ସ୍ପଷ୍ଟ ହୁଏ । ପୁଣି ସେ

ସଂସ୍କୃତ କାବ୍ୟ ଶଇଁଙ୍କୁ ଏକାନ୍ତ ଆଦର କରୁଥିଲେ ସେ କାବ୍ୟର ନାୟିକାଙ୍କୁ ମଧ୍ୟ କବି ସଂସ୍କୃତ ସାହିତ୍ୟ ସେବିକା କରି ଦେଇଛନ୍ତି ।

ଗୀତା ସୀତା ଧବ ମାଳତୀ ମାଧବ

ଶ୍ରୀ କୀ ତା ଧବ ଚରିତ

ରଘୁ ପଞ୍ଚବାଣ ଘଟଣା ପୁରାଣ ଶ୍ରବଣେ କଳାଇଲେ ଶବ୍ଦ ପୁଣି

ଜୟଦେବ କୃତ ଚନ୍ଦ୍ରେନ୍ଦୁ ରଚିତ ମୋହନ୍ତା ଗୋପାଙ୍ଗନା ଗୀତା

ପାଠ କଲାଅରୁ ମଧୁର ସେ ଗୁଡ଼ ଚମତ୍କାରଯୁକ୍ତା ଭଣିତା

ଯେଉଁ କବି କାବ୍ୟର ନାୟିକାଙ୍କୁ ତାଙ୍କ କିଶୋରାବସ୍ଥାରେ ଏତେଗୁଡ଼ିଏ ସଂସ୍କୃତ କାବ୍ୟ ପଢ଼ାଇଛନ୍ତି ସେ ତାହାଠାରୁ ଅଧିକ ମାତ୍ରାରେ ପଢ଼ିଥିବେ ବୋଲି ମନେ ହୁଏ ।

ନୈଷଧ କାବ୍ୟର କୁଣ୍ଡିନ ନଗର ବର୍ଣ୍ଣନାକୁ ମିଳାଇ ଲାବଣ୍ୟବତୀ କାବ୍ୟର ମହାରାଜଙ୍କ ଚୋପପୁର ଓ ମଣି ମଞ୍ଜୁଳା ରାଜଧାନୀ ବର୍ଣ୍ଣନା ପାଠକଲେ ଉଭୟଙ୍କର ଭାବ, ଅଳଙ୍କାର ଓ ଭାଷାର ସାମଞ୍ଜସ୍ୟ ଜଣାଯାଏ । ତଥାପି ଚନ୍ଦ୍ରକଳାର କବି ଯେ ନୈଷଧର ଅନୁବାଦ କରି ନାହାନ୍ତି ଏହା ଆମ୍ଭମାନଙ୍କୁ ଭୁଲିବାକୁ ହେବ ନାହିଁ । ଅତିରଞ୍ଜନ ବା ବକ୍ରୋକ୍ତି ରୂପକାଳଙ୍କାରର ବ୍ୟବହାରାତିଶଯ୍ୟ ଏପରି ବର୍ଣ୍ଣନାଗୁଡ଼ିକର ବିଶେଷ ଲକ୍ଷଣ । ଏପରି ସମୟରେ କଳ୍ପନା ଅଶ୍ୱର ଗତି ସଂଯତ ରହେ ନାହିଁ, ଅବାଧ ଗତିରେ ତାହା ଧାଏଁ । ଏହି କଳ୍ପନାର ଚୋଖାପଯାନରେ ଆମ୍ଭେମାନେ ଅତିରଞ୍ଜନକରି ଏତେ ଉଚ୍ଚକୁ ଚାଲି ଯାଉଁ ଯେ ପୃଥିବୀର ବାସ୍ତବତା ସହିତ ଆମ୍ଭମାନଙ୍କର ସମ୍ବନ୍ଧ ଛିନ୍ନ ହୁଏ । ଏପରି ଅତିରଞ୍ଜନର କାରଣ କ'ଣ ? ଏପରି ବକ୍ରୋକ୍ତିର ଆବଶ୍ୟକତା କେଉଁଠାରେ ? ଏହାର ବହୁଳ ବ୍ୟବହାର ସାହିତ୍ୟ କ୍ଷେତ୍ରରେ କେତେଦୂର ସମୀଚୀନ ? ଏପରି ପ୍ରଶ୍ନର ଉତ୍ତର

ସ୍ୱକୀୟ ରୁଚି ଉପରେ ନିର୍ଭର କରେ । ମାତ୍ର ଏପରି ବର୍ଣ୍ଣନା ଯେ, ରଙ୍କ ପାଠକର ଉପଭୋଗ୍ୟ ବସ୍ତୁ ଏଥିରେ ସନ୍ଦେହର ସ୍ଥାନ ନାହିଁ । ସାହିତ୍ୟ ସମାଜର ଦର୍ପଣ ବୋଲି ଜଣେ ଇଂରେଜ କବି କହିଛନ୍ତି । ଏହି ଧାରାବରେ ବସ୍ତୁ ଦ୍ୱାରା ବର୍ଣ୍ଣନାର ସ୍ୱାଭାବିକତା ନଷ୍ଟ ହୁଏ । ମାତ୍ର ପ୍ରକୃତ ପକ୍ଷେ ସାହିତ୍ୟ, ଦର୍ପଣ ଅପେକ୍ଷା ଆଉ ଟିକିଏ ବେଶି । ଦର୍ପଣ ବା ଫୋଟୋଗ୍ରାଫରେ ଆମ୍ଭେ ଯେଉଁ ଚିତ୍ର ଦେଖୁଁ ତାହା ପ୍ରକୃତ ଜିନିଷଠାରୁ ଅଧିକ ନୁହେଁ । ଆମ୍ଭେ ଯଦି ପ୍ରକୃତ ତାଜ-ମହଲକୁ ଦେଖିବାକୁ ପାଉଁ, ପ୍ରକୃତ ଚିଲିକାରେ ଭ୍ରମଣ କରିପାରୁଁ, ପ୍ରକୃତ ଗୌରୀଶୃଙ୍ଗ ଉପରକୁ ଉଠିବାକୁ ସମର୍ଥ ହେଉଁ ତେବେ ଏଗୁଡ଼ିକୁ ଫୋଟୋରେ କିମ୍ବା ଦର୍ପଣରେ ଦେଖିବାକୁ ଇଚ୍ଛା ହେବ ନାହିଁ । କାରଣ ପ୍ରକୃତ ଜିନିଷ ଅପେକ୍ଷା ତାହାର ପ୍ରତିବିମ୍ବର ମୂଲ୍ୟ ନିକୃଷ୍ଟତର । ମାତ୍ର ସାହିତ୍ୟରେ ପ୍ରକୃତ ଜିନିଷର ମୂଲ୍ୟ ବଢ଼ିଯାଏ । ସାହିତ୍ୟିକ ଜିନିଷ ପ୍ରକୃତ ଜିନିଷ ଅପେକ୍ଷା ଅଧିକ ମୂଲ୍ୟବାନ୍ ବୋଲି ଲୋକେ ସାହିତ୍ୟକୁ ଏତେ ଆଦର କରନ୍ତି । ତେଣୁ ସ୍ୱାଭାବିକତାର ଦୋହାଇ ଦେଇ ସାହିତ୍ୟିକ ବର୍ଣ୍ଣନାକୁ ଗୌଣ ସ୍ଥାନ ଦେଲେ ଚଳିବ ନାହିଁ । ସାହିତ୍ୟ ଉପଭୋଗ କରିବାର ବସ୍ତୁ ଅଟେ । ଏହାର ପରିବେଷଣ ଉତ୍କୃଷ୍ଟ ପାତ୍ରରେ ନହେଲେ ରୁଚି ଉପଲବ୍ଧି ସମ୍ଭବପର ହେବନାହିଁ । ନଗରୀର ଅଟ୍ଟାଳିକାଗୁଡ଼ିକ ଖୁବ୍ ଉଚ୍ଚ ଏପରି ଖାଣ୍ଟି ଭାଷାରେ କହି ଦେଇଥିଲେ ଭୂଗୋଳ ତଥ୍ୟଟି ଆମ୍ଭମାନଙ୍କର ଅନଧିଗମ୍ୟ ହୋଇ ନଥାନ୍ତା। ମାତ୍ର ନୈଷଧ କାବ୍ୟ ତ ଭୂଗୋଳ ପାଠ୍ୟ ନୁହେଁ, ତାହା ସାହିତ୍ୟ । ତେଣୁ—

ସେ ପୁରୀ ଅଟ୍ଟାଳ-ଶୀଳ-ଚୂଳେ ଚଳେରୁ
ଶିର କେତନ ବାତେ ଆନ୍ଦୋଳିତ ହେବାରୁ
ସେ ତହୁଁ ଲଭିଣ ତାଡ଼ନ ।

ଗମନ୍ତି ଅଗଣାଗ୍ରେଂ ଦେବବମ୍ବିତ ତୁରଙ୍ଗମ,
ଅନୁରୁ-ଅରୁଣେ ଗୃଳନରୁ କ୍ଷଣେ ଲଭନ୍ତି ବିଶ୍ରାମ ।
( ନୈଷଧ ୧ମ ଛନ୍ଦ )

ସେହି କଥାଟିକୁ ଭିନ୍ନ ମାର୍ଗ ଅବଲମ୍ବନ କରି ଚନ୍ଦ୍ରକଳାରେ କବି ବ୍ୟକ୍ତ କରି ଅଛନ୍ତି ।

ଚୂଷ ପ୍ରତିବିମ୍ବ ଉମ୍ବରାବଲମ୍ବି ମାଳଶ୍ରୀ ଜଗତୀରେ କାଶି
ଲଜିଲି ବୟସୀ ଗୃହ ପାଞ୍ଚ ମିଶି କୁସୁମ ଗୁଚ୍ଛ ଗୁଚ୍ଛ ରସି
ଚୂତ କୁସୁମ !
ବୋଲି ଦେ ପ୍ରତିବିମ୍ବ ଧରେ ।
ସମୀରଣ ଉଡ଼ା ଫୁଲ ଭ୍ରମେ ଛୁଡ଼ା ହୋଇ ଦେ ତାହାକୁ ଓଠାରେ ।

ଏଥିରୁ ଜଣାଯାଏ ଅଟ୍ଟାଳିକାଗୁଡ଼ିକ ତାରାପୁଞ୍ଜର କେତେ ନିକଟରେ, ଚନ୍ଦ୍ର ଅନେକ ପର୍ଯ୍ୟନ୍ତ ସୌଧଗୁଡ଼ିକର ଉଚ୍ଚତା ବ୍ୟାପିଛି । ଏହା କହିବାକୁ ଯାଇ କବି ଆଉ ଗୋଟିଏ ମନୋମୁଗ୍ଧକର କଳ୍ପନା କରିଅଛନ୍ତି ।

ଯହିଁ କେଉଁ ରସ ଲମ୍ପଟ ପୁରୁଷ ଗବାକ୍ଷ ପାଶେ ବସିଥିଲି
ଅଦୂର ଶଶି ବିମ୍ବକୁ ପ୍ରେୟସୀ ବଦନ ଭ୍ରମେ ଚୁମ୍ବିଦେଲି ।
ଜଣା ହେବାରୁ;
ମାଧୁର୍ଯ୍ୟ ବୋଇଲି ଯା କହୁଁ,
ସେହି ଦିନୁ ଲଗ୍ନ ରଜ ଦ୍ୱିଜରାଜ କାଳିମା ଲଭିଛି କହୁଁ ।

ଉଚ୍ଚତାର ଅତିରଞ୍ଜନରୁ ଏପରି ମନୋରମ କଳ୍ପନା ଓ ଚମତ୍କାରପୂର୍ଣ୍ଣ ଛବି ଯଦି ଲଭ୍ୟ ହୋଇପାରେ ତାହା ରସିକର ଉପଭୋଗ୍ୟ ହେବା ଅତି ସ୍ୱାଭାବିକ । କବିସୂର୍ଯ୍ୟଙ୍କ କଳ୍ପନା ସେତିକିରେ ଶେଷ ନୁହେଁ । ସେ ମହାରାଜଙ୍କ ଘୋଷ ରାଜଧାନୀ ବର୍ଣ୍ଣନାରେ ଗୋଟିଏ ବିଚକ୍ଷ

ପ୍ରେମପୂର୍ଣ୍ଣ ଆଖ୍ୟାୟିକା ସଂଯୋଗ କରିଅଛନ୍ତି । ଏହା କବିଙ୍କର ନିଜ ସମ୍ପତ୍ତି, କାହାର ଅନୁକରଣରେ ତାହା ହୋଇନାହିଁ ।

ସାତପୁରୀ ମହଲଙ୍କ ମହୋନ୍ନତ ଶିର
ଧୃଷଣ ନେଦଷ୍ଟୁ ନୋହେ ଧୃଷଣା ଗୋଚର ।
ଦେବଙ୍କର ସଲିଳ ମଜ୍ଜନ କାଳେ ନିତ
ଦେବଦାସୀମାନେ ହୋଇ ସସଭ୍ରମ ଅତ ।

ସ୍ୱ ସଞ୍ଚିତ ଜଳଘଟ 'ସ୍ୱର୍ଗ' ବୋଲି ଅସି
ଧରନ୍ତି ବକ୍ଷସ୍ଥୂଳ କନକ କଳସୀ ।
ନୀରନ୍ଧ୍ର ହେବାରୁ ବକ ଶନ୍ତି କେଉଁମାନେ
ପତାକାକୁ ଦେଖି କେ ହସନ୍ତି ମନେ ମନେ ।

ଅର୍ଦ୍ଧି ପ୍ରହରେ ଶୋଇଥିଲ ସଚିବ ଯୁବତୀ
ମାର ବିକାର ବିଧୁର ହୋଇ ଚାଟସ୍ପୃଷ୍ଟ ।
ନିଜ ଅନ୍ତଃପୁର ଭ୍ରମେ ପଶିଲେ ସେ ପୁରେ
ଦେଖିଲେ ଶୋଇଛନ୍ତି ବାଲ ପଲଙ୍କ ଉପରେ ।

ନିଜ ସରସିଜନେତ୍ରା ଭ୍ରମେ ରତ କରୁ
ନିଦ୍ରା ଭଙ୍ଗେ ପଗୁରଙ୍କ ସେ ହେମ ରମ୍ଭୋରୁ ।

କାଳିଦାସ ବାଣଭଟ୍ଟ ପ୍ରଭୃତି ପୁରାତନ କବି । ସେମାନଙ୍କର କାବ୍ୟ କଥା ବିଶେଷ ପକ୍ଷେ ପୌରାଣିକ ଆଖ୍ୟାୟିକା ଉପରେ ନିର୍ଭର କରୁଥିବ । ରଘୁବଂଶର ଇନ୍ଦୁମତୀ ବୃତ୍ତାନ୍ତ ପୁଣି କାଦମ୍ବରୀ ପ୍ରଭୃତି କାବ୍ୟରେ ପୂର୍ବ ଜନ୍ମ ବୃତ୍ତାନ୍ତ ବର୍ଣ୍ଣନା ଅବଶ୍ୟକ ହୋଇପଡ଼ିଛି । ପୁଣି କାଳିଦାସଙ୍କ ପର କେତେ କବି ନାଟକ ପରକଠେଁ ନୋଟକ ଲେଖି ପାର୍ଥିବ ଜୀବନ ସଙ୍ଗେ ଅପାର୍ଥିବ ବା ପାରଲୌକିକ ଜୀବନର ସମ୍ମିଶ୍ରଣ କରିବାକୁ ବାଧ୍ୟ ହୋଇଛନ୍ତି । ଯଥା ଉର୍ବଶୀ ଓ ଶକୁନ୍ତଳା,

ଉପେନ୍ଦ୍ରଭଞ୍ଜ ପୌରାଣିକ କାହାଣୀର ନିଗଡ଼ରୁ ନିଜକୁ ମୁକ୍ତ କରି କପୋଳ କଳ୍ପିତ କଥାବସ୍ତୁ ସମ୍ବଳିତ କାବ୍ୟ ରଚନାର ଅଭିନବ ପନ୍ଥା ଉତ୍କଳ ସାହିତ୍ୟରେ ଫିଟାଇ ମଧ୍ୟ ଏହି ଅଲୌକିକ ପୂର୍ବ ଜନ୍ମ ବୃତ୍ତାନ୍ତ ବର୍ଣ୍ଣନ ଅଭ୍ୟାସରୁ ନିଷ୍କୃତି ଲାଭ କରିପାରି ନଥିଲେ। ଲାବଣ୍ୟବତୀ ତଥା ଚନ୍ଦ୍ରଭାନୁଙ୍କ ପୂର୍ବ ଜୀବନ ବୃତ୍ତାନ୍ତ କାବ୍ୟର ଗତି ବା ବିକାଶ ନିମନ୍ତେ କୌଣସି ପ୍ରକାର ସାହାଯ୍ୟ କରୁନାହିଁ। ବରଂ କାବ୍ୟର ସେହି ସୌନ୍ଦର୍ଯ୍ୟ ବିକାଶର ଅନ୍ତରାୟ ହେଉଛି। ସେହିପରି ଚନ୍ଦ୍ରକଳା କାବ୍ୟର ଦ୍ୱିତୀୟ ଛାନ୍ଦଟିର ଆବଶ୍ୟକତା କିଛି ନାହିଁ। ଭକ୍ତୀୟ ରୀତିକୁ ଅବହେଳା କରି କବିସୂର୍ଯ୍ୟ ଯଦି ଏହି ଛାନ୍ଦଟି ରଚନା କରି ନଥାନ୍ତେ, କାବ୍ୟଟିର ସ୍ଥାନ ଅଧିକ ଉଚ୍ଚରେ ରହନ୍ତା। ମାତ୍ର ଯେଉଁଠାରେ କବିସୂର୍ଯ୍ୟ ଆମ୍ଭମାନଙ୍କୁ ଛାନ୍ଦଟି ଦେଇଛନ୍ତି ତାହାର ସଦ୍‌ବ୍ୟବହାର କରିବାରେ ଆମ୍ଭର ତ୍ରୁଟି ଶୋଭନୀୟ ହେବନାହିଁ। ଲାବଣ୍ୟପୁର ଓ କେଳିମଞ୍ଜୁଳ ଇନ୍ଦ୍ରସଭାରେ ପ୍ରବେଶ କରି ଯେଉଁ ସୌନ୍ଦର୍ଯ୍ୟର ଭାବ ବିସ୍ତାର କରିଥିଲେ ତାହାର ଅନୁଭୂତି ଚନ୍ଦ୍ରକଳା ପାଠକ ବ୍ୟତୀତ ଅନ୍ୟ କାହା ଭାଗ୍ୟରେ ଘଟି ନପାରେ। ସୌନ୍ଦର୍ଯ୍ୟ ରସିକ କବିଙ୍କ ଲେଖନୀରୁ ଏହି ରଚନାରେ ଯେଉଁ ଭାଷାମଧୁ କ୍ଷରିଅଛି ତାହା ଉତ୍କଳ ସାହିତ୍ୟକୁ ମଧୁମୟ କରି ଚିରକାଳ ରଖିବ ଏଥିରେ ସନ୍ଦେହ ନାହିଁ।

କେଳି ମଞ୍ଜୁଳ ନାମ ମହିଳା ସାଥେ
ଯେଉଁ ମୋହନା ନାମ ରମଣୀ ହାତେ ଯେ
ପ୍ରବେଶ ହୋଇ ଦିବ୍ୟ ସଂସଦ ତଳେ
ଉଷ୍ଣୀଷ ଶିରେ କର ଯୋଡ଼ିବା ବେଳେ ଯେ
ଏକାବେଳକେ ସଭ୍ୟ ନେତ୍ର ମଣ୍ଡଳୀ
କଲେ ସେ ଯୁଗଳୀର ଉପରେ କେଳି ଯେ,

ଶଙ୍କି ମାନସେ ଏହୁ ଚିନ୍ତା ଘେନିଲା
ଏ ଶତ କୋଟି ଅବା ନେତ୍ର ନୋହିଲା ଯେ,
ସଂଯତ ତେଣେବଡ଼ ଶରୁଧ ସଜ୍ଜ
ମଦନ କମ୍ପିଗଲ ଚାହିଁ ତା ଶୋଭା ଯେ,
ଗନ୍ଧର୍ବ କଲା ଗୁଣାଙ୍କଳା ସଂଯୋଗ
ତା ରମା କଲା ମନୋରଞ୍ଜନାରାଗ ଯେ,
ନୟନେ ଚାହିଁ ଛବି ଅପରିମିତ
ଶ୍ରବଣେ ଶୁଣି ସର୍ବେତାର ସଙ୍ଗୀତ ହେ !
ସଜ୍ଜ ଦର୍ଶିଲା ହେଲ ପର ଯା ଲେଖା
ସେ ଦନ୍ତ ବୋଲଇଲେ ଗୀର୍ବାଣେ ଲେଖା ଯେ,
ସ୍ୱକାରସିକ ଶଶ୍ରୁ ମୟୂଖ ପଣ୍ଡ
ଡାମ୍ବଡ଼ମ୍ବର ଯଥା ଛପଇ ସନ୍ଧି ଯେ,
ଯହୁଁ ଦୁହିଁଙ୍କ ଭର ଭାନ୍ତ୍ର ବାଜିଲା
ନିର୍ଗଣ୍ଡଙ୍କର ତେଜଃ ପୁଞ୍ଜ ଭାଜିଲା ଯେ,
ନିର୍ବାଣ ଲଭିପର ହେବାରୁ ଶିଖି
ଗୀର୍ବାଣୀ ବଳି ଚିତ୍ରେ ହେଲା ଏପର ଯେ,
ଭ୍ରମରେ ହେଲେ ଏହା ସମରେ କେହୁ
ଅମରେ ଅମ୍ଭେ ଦର୍ଶିଲଉଁ ତ ନାହୁଁ ଯେ,
ଭ୍ରମସି ଭୁଲ୍ଧ କେଶ ଠାଣି ନିରେଖି
ଚମସି ନୟନାକୁ ତାହାର ଦେଖି ଯେ,
ଅମସି ଶରୀରଲେ ନ ମଣ ଅମ୍ଭେ
କାହିଁକି ଧରିଥାଉଁ ଦେହକୁ ଦମ୍ଭେ ଯେ !

ଲାବଣ୍ୟବତୀର ପୂର୍ବ ଜନ୍ମ ବୃତ୍ତାନ୍ତ ଏହାଠାରୁ ସ୍ପଷ୍ଟ । ପାର୍ବତୀଙ୍କ ମନରୁ ଜାତ ହେବା କନ୍ୟାର ରୂପ ବର୍ଣ୍ଣନା ଏତେ ଉପୃକ୍ତ ଭାବେ

କରିପାରିନାହିଁ । ବେଶି ନିବନ୍ଧ ଭଞ୍ଜ କବି, ଦୁଇଟି ପଦରେ ପାର୍ବତୀଙ୍କ ମୁଖରେ ଶେଷ କରିଛନ୍ତି—

ହର ନେଇ ଯାଅ ଯେବେ ହେଉ ଏ ଶୋଭାଙ୍ଗୀ
ପିଇ ପିନା ଯୋଡ଼ର ସୁଲୁଗାପଣ ଭୃଙ୍ଗୀ ସେ ।

କବିସୂର୍ଯ୍ୟ ଭଞ୍ଜଙ୍କଠାରୁ ଏହି ଭାବଟି ପାଇଥିଲେ ସତ୍ୟ, ମାତ୍ର ତାହାକୁ ନିଜ ମୌଳିକ ରୁଚି ଓ ଶକ୍ତି ଅନୁସାରେ ବ୍ୟବହାର କରି ଗୋଟିଏ ଅପୂର୍ବ ଶୋଭାର ଭଣ୍ଡାର ସୃଷ୍ଟି କରି ଦେବତାମାନଙ୍କ ଅଭିଶାପରେ ଗନ୍ଧର୍ବ ଦମ୍ପତି ବିରହ ବିଧୁର ହୋଇ ଅନ୍ୟ ରୂପରେ ରହିଲେ । କୁସୁମ ସଂସ୍ପର୍ଶରେ ଲାବଣ୍ୟଧାରା ଚନ୍ଦ୍ରରୁ ଓ ବେଳା ମଞ୍ଜୁଳ ଭିନ୍ନ ଭିନ୍ନ ସ୍ଥାନରେ ରହିବାକୁ ଲାଗିଲେ ।

ଭଞ୍ଜଙ୍କର ଲାବଣ୍ୟବତୀ ଏତେଦୂର ଶୃଙ୍ଗାରବହୁଳ ଯେ ସେଠାରେ ଅନ୍ୟରସ ଫୁଟିବା କଷ୍ଟସାଧ୍ୟ । ତେଣୁ ଲାବଣ୍ୟବତୀଙ୍କ ଜନ୍ମ ବୃତ୍ତାନ୍ତ ପ୍ରତି ଆମ୍ଭମାନଙ୍କର ମନ ସେତେ ଆକୃଷ୍ଟ ହୁଏ ନାହିଁ । ମାତ୍ର କବିସୂର୍ଯ୍ୟଙ୍କ ନାୟକ ନାୟିକାଙ୍କର ଜନ୍ମ ବୃତ୍ତାନ୍ତ ବର୍ଣ୍ଣନ କଲେ ପାଠକର ମନ ପୂର୍ବୋକ୍ତ ବାତ୍ସଲ୍ୟ ରସ ଲାଭ କରି ନିର୍ମଳ ଓ ଶାନ୍ତିପୂର୍ଣ୍ଣ ହୋଇପଡ଼େ । ଚତୁର୍ଥ ଛାନ୍ଦରେ କାବ୍ୟର ନାୟକ ଅଙ୍ଗସୁନ୍ଦରଙ୍କର ଜନ୍ମ ପୂର୍ବରୁ ତାଙ୍କ ପିତା ମାତାଙ୍କ ସନ୍ତାନାଭାବର ବେଦନା କବି ଅତି ଧୀର ଓ ପ୍ରାଞ୍ଜଳଭାବରେ ପ୍ରକାଶକରିଅଛନ୍ତି । ସ୍ତ୍ରୀଜନସୁଲଭ ସତ୍ୟ ଚିନ୍ତା ଗୋଟିଏ ଅତି ସ୍ୱାଭାବିକ ଈଶ୍ୱରଦତ୍ତ ପ୍ରେରଣା । ଏହି ଚିନ୍ତାହିଁ ବାତ୍ସଲ୍ୟ ରସର ପ୍ରସ୍ରବଣ । ରାଣୀ ସନ୍ତାନହୀନା ହୋଇ ଯେଉଁ ମାନସିକ କଷ୍ଟ ଅନୁଭୋଗ କରୁଥିଲେ ତାହାର ପ୍ରସାର କରି କବିସୂର୍ଯ୍ୟ ମାନବିକ ମନସ୍ତତ୍ତ୍ୱରେ ତାଙ୍କର କେତେଦୂର ଅଭିଜ୍ଞତା ଥିଲା ଜଣାଇଅଛନ୍ତି ।

ଏତେ ଭାଗ୍ୟବତୀ ହେଲେହେଁ ସେ ସତୀ ଶିରୋମଣି ପ୍ରତିଦିନ
ସନ୍ତାନ ଅଭାବ ଚିନ୍ତାରୁ ନିରତ ହୋଇଥାଏ ଦୁଃଖମନ ।

ଅଖଣ୍ଡ ମଣ୍ଡଳ ଆଚଣ୍ଡାଖଣ୍ଡଳ ଭର ପଲ୍ଲିବ ଧଇଲ
ଲକ୍ଷ ସାମନ୍ତ ଶ୍ରୀ ଅରୁଣମଣି କରଣେ ପଦ ଧୋଇଲ ।

ସାଧ୍ୱୀ ସ୍ତ୍ରୀ ପକ୍ଷରେ ଅନ୍ତ ବେଦନା ଲାଘବର ଏକମାତ୍ର ଉପାୟ ସ୍ୱକୀୟ ସ୍ୱାମୀ ନିକଟରେ ଅନ୍ତପ୍ରକାଶ । ମାତ୍ର ଲଜ୍ଜାଶୀଳା ରାଣୀଙ୍କ ପକ୍ଷେ ପତିଙ୍କ ସମ୍ମୁଖରେ ସେସବୁ କହିବା କଥିବ କଷ୍ଟସାଧ୍ୟ ହୋଇଥିଲା ।

ତେଣୁ, "ହେବାରୁ କାତର ଜଣାଇଲା ତାର ପ୍ରିୟ ସଖୀ ରସବଲ୍ଲୀ"

"ଦେବ ମୋ ସଜନୀ ପୂର୍ଣ୍ଣିମା ରଜନୀ ତୁମ୍ଭେ ବସ୍ତ୍ରବସ୍ତୀ ଧବ
ଘେନ ମାନବେଶ ସେ କି ମାନବେଶ ନକଳ୍ପ ଲାଜେ ରହିବ ।
ନ ଚୁମ୍ବିଲା ଶିଶୁ ଅଞ୍ଜନ ଅଚଳ ବଦନ ରଦନାଂଶୁକ
କେବଳ ଏ ଦଳ ଦାଳନ ସଂପତ୍ତି ବୃଥା ଘେନି କରେ ଶୋକ"

ଏହି କଥୋପକଥନ ପରେ ପୁତ୍ର ସନ୍ତାନ ଲାଭ ସକାଶେ ଯାହା ଲୋକେ ସାମାଜିକ ରୀତି ଅନୁସାରେ କରନ୍ତି ତାହା କରାଗଲା । ତା'ପରେ ନୈମିଷାରଣ୍ୟାଗତ ଯତିଙ୍କ ସଙ୍ଗେ ରାଜାଙ୍କର ଦେଖା ହେଲା ଓ ତାଙ୍କ ପ୍ରସାଦରୁ ଚୂତଫଳ ଖାଇ ରାଣୀ ଗର୍ଭବତୀ ହେଲେ । ଯତିଙ୍କ ପ୍ରବେଶ ଅତି ଅଲୌକିକ, ମାତ୍ର ତାହା କାବ୍ୟର ଅଗ୍ରଗତି ନିମନ୍ତେ ଏକାନ୍ତ ଆବଶ୍ୟକ । ତା ନହେଲେ ଚୂତଫଳ କର୍ତ୍ତୃକ ଲାବଣ୍ୟଧ୍ୱଜଙ୍କର ଅନଙ୍ଗସୁନ୍ଦର ରୂପେ ରାଣୀଙ୍କ ଗର୍ଭ ସମ୍ଭୂତ ହେବାର ଅନ୍ୟ ଉପାୟ ନାହିଁ । ଏସବୁ ଅଲୌକିକ ଘଟଣା ଅସ୍ୱାଭାବିକ ରୂପେ ପ୍ରତୀୟମାନ ହେଲେ ସୁଦ୍ଧା ବାସ୍ତବ ଜୀବନରେ ଏହାର ଘଟନା ବିରଳ ନୁହେଁ । କେଉଁ ଘଟିତବ୍ୟ ଦ୍ୱାରା ନିଜ

ଭବିଷ୍ୟତ୍ ଜୀବନର ଗତି କେଉଁ ମାର୍ଗରେ ଗୃହୀତ ହେବ ସେ ସମ୍ବନ୍ଧ ମନୁଷ୍ୟ ସମ୍ପୂର୍ଣ୍ଣ ଅଜ୍ଞ । ତେଣୁ ଦୃଷ୍ଟଫଳ ଲାଭ ଅଦୃଷ୍ଟିକ ଏବଂ ଦୈବ ବିଧାନଗତ ହେଲେ ସୁଦ୍ଧା ଅସ୍ୱାଭାବିକ ନୁହେଁ । ଏଠାରେ ଅନ୍ୟ ଗୋଟିଏ କଥା ଭୁଲିଯିବା ଉଚିତ ନୁହେଁ । ଯେତେ ଦୈବଦତ୍ତ ପ୍ରସାଦ ଲାଭ ହେଲେ ମଧ୍ୟ ସନ୍ତାନ ଲାଭ ସକାଶେ ସ୍ତ୍ରୀ ପୁରୁଷର ଯୌନ ମିଳନ ଯେ ଏକାନ୍ତ ଆବଶ୍ୟକ, ଏହା କବିସୂର୍ଯ୍ୟଙ୍କର ଅଜ୍ଞାତ ନଥିଲା । ସେ ତେଣୁ କହିବାକୁ ଭୁଲିନାହାନ୍ତି ।

ଦେବୀ ସେବି ସେ ବିଶୁଦ୍ଧ ସିଦ୍ଧ ଫଳ ସଉରଭ ମହାସୁଖେ,
ପୂଷି ସେ ନିଶୀଥ କୃତ ମନୋରଥ ପହୁଞ୍ଚିଲା ପ୍ରିୟ ପାଖେ ।

ତାହାର ଫଳରେ,

ସେହି ଦିନୁ କ୍ରମ କ୍ରମରେ ସେ ହେମମଞ୍ଜିରୀ ଖଞ୍ଜନଦୃଶା
ବିଜାତୀୟ ଶୋଭା ବହି ହେଲା ଗର୍ଭାଧାନ ଉପାଲସା ।

କବିଙ୍କର ଯୌନ ସମ୍ମିଳନଠାରୁ ପ୍ରସବ ଜନ୍ମ ସଂସ୍କାର ପର୍ଯ୍ୟନ୍ତ ଏହି ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ଆଧୁନିକ ରୁଚି ବିରୁଦ୍ଧ—ଅମ୍ଭମାନଙ୍କର ସ୍ୱସାମାଜିକ ନୁହେଁ କି ସ୍ୱଦେଶୀୟ ନୁହେଁ, ଏହା ବିଦେଶାଗତ । ଏପରି ବିଚାରର ଯୁକ୍ତିଯୁକ୍ତତା ସମ୍ବନ୍ଧେ ଶିକ୍ଷିତ ମଣ୍ଡଳୀଙ୍କର ପୁନର୍ବିଚାର ଆବଶ୍ୟକ ବୋଲି ମନେହୁଏ ।

ବାତ୍ସଲ୍ୟ ରସର ପ୍ରକାଶ ନିମନ୍ତେ କବି ଅନ୍ୟ ଏକ ସୁଯୋଗ ପାଇ ତାହାର ସଦ୍‌ବ୍ୟବହାର କରିବାକୁ ଛାଡ଼ିନାହାନ୍ତି । ପୁତ୍ରବତୀମାନେ ଦୁହିତା ମୁଖଦର୍ଶନାର୍ଥେ ଆକାଂକ୍ଷିତା । ଏହା ଗୋଟିଏ ଅତି ସରଳ ସତ୍ୟ । ଚନ୍ଦ୍ରକଳାଙ୍କର ଜନ୍ମ ପୂର୍ବରୁ ଏହି ଅଭାବଟି ରାଣୀ ମଣିମଞ୍ଜୁଳା ବେଶୀ ଅନୁଭବ କରୁଥିଲେ । ଚନ୍ଦ୍ରକଳା କାବ୍ୟ ଯେଉଁ ପରିସ୍ଥିତିରେ କଳନ୍ତର ରାଜବାଟୀରେ ରାମଚନ୍ଦ୍ର ଛୋଟରାୟଙ୍କ

ଅନ୍ୱେଷଣରେ ତାଙ୍କ ସଙ୍ଗ କବି ଅରମ୍ଭ କରିଥିଲେ, ସେହି ପରିସ୍ଥିତି ରାଣୀଙ୍କର ଏହି ଦୁହିତା ଲାଭାକାଂକ୍ଷା ନିମନ୍ତେ ବହୁଦୂର ଦାୟୀ ହୋଇଥିବ ବୋଲି ମନେ ହୁଏ । ନହେଲେ ଲାବଣ୍ୟବତୀ ପରି ଚନ୍ଦ୍ରକଳାର ଜନ୍ମ ମଧ୍ୟ ଅଳ୍ପ କେତେ ପଂକ୍ତିରେ ହୋଇପାରିଥାନ୍ତା । ଚନ୍ଦ୍ରକଳା ସ୍ୱୟଂ କଳନ୍ତର ରାଜା ଓ ରାଣୀଙ୍କର ପାଳିତା ଦୁହିତା । ତାହାଠାରେ ରାଜ ଦମ୍ପତି ସମସ୍ତ ଅପତ୍ୟ ସ୍ନେହରସ ଢାଳିବା ପରେ କବିସୂର୍ଯ୍ୟଙ୍କୁ ସେହି ସ୍ନେହକୁ ମୂର୍ତ୍ତିମନ୍ତ କରିବା ସକାଶେ ଚନ୍ଦ୍ରକଳା ସୌଧ ନିର୍ମାଣ ଭାର ଦିଆ ଯାଇଥିଲା । ସେ ତେଣୁ ଏହି ଦୁହିତା ଲାଭ ଲାଳସା ରହସ୍ୟକୁ ସଯତ୍ନେ ପ୍ରକାଶ କରିବାକୁ ଚେଷ୍ଟା କରିଅଛନ୍ତି ।

କେଳୀ କଲ୍ଲୋଳା ! ତାର ପ୍ରିୟ ପାଠ ଅଙ୍ଗନା
ମାର ତୁଲ୍ୟ ତନୟ କୁମାର ଜନନୀ ନନ୍ଦନା ବିନା ମ୍ଳାନମନା ।

ରାଣୀ ଦୁହିତା ଲାଭ ସକାଶେ ସକଳ ପ୍ରକାର ସାମାଜିକ ରୀତି ଓ ଧର୍ମ ଅନୁସରଣ କରିବାକୁ ଦ୍ୱିଧା ବୋଧ କଲେ ନାହିଁ । ବାରବ୍ରତ ଓ ଓଷା ଉପବାସରେ ତାଙ୍କର ଦିବସ ଅତିବାହିତ ହେବାକୁ ଲାଗିଲା ।

ଏପରି ବୟସ ହେଲା ଜନକାଂଶ ପଡ଼ୁଥିଲା, ନାଥ କୋଳେ
ସେ ବାଳରତନ ଲଭିଲା ସ୍ୱପନ
ତ୍ରିଯାମା ଅବସାନ କାଳେ । ପୂର୍ଣ୍ଣ କନକ,
କୁମ୍ଭ ଧରିଛି କନ୍ୟା କେହି,
ବିଭୂଷିତା ବାଳୀ ଜଣେ କେଶରାଳୀ ନିଜପୁରରେ ଅଛି ବହି ।

ସେହି ସ୍ୱପ୍ନରେ କେବଳ ରାଣୀ "ସୁପୁଷ୍ପ ଗୋସ୍ତମା ଲତିକାରୁ ଗୋଟିଏ ପରିପକ୍ୱ ଫଳ ଟିକି ଗର୍ଭବତୀ ହେଲେ । ତା'ପରେ ଚନ୍ଦ୍ରକଳାର ଜନ୍ମ ।

ଚନ୍ଦ୍ରକଳା ମାତାଙ୍କଠାରୁ ଯଥେଷ୍ଟ ଆଦର ପାଇ ତାହାର ବାଲ୍ୟାବସ୍ଥା ଅତିବାହିତ କଲା । ତାହାର ଗୋଟିଏ ସରଳ ଦୃଷ୍ଟାନ୍ତ, "ଜନନୀଙ୍କି ଜଣାଇଲ, ବୀଣା ଯନ୍ତ୍ର ଆଣାଇଲ, ତହିଁ ଶସ୍ତ୍ର ଜଣା ହେବାକୁ ପ୍ରବୀଣା ଚଣ୍ଡିସ୍ତବ ଶୁଣାଇଲା", ମାତ୍ର କିଶୋର ଲୀଳା ବେଳେ ଜନନୀଙ୍କ ନିକଟରେ ବାସ କ୍ରମେ କ୍ରମେ ବିରଳ ହେଲା । କେବଳ ନିୟମିତ ଓ ନିର୍ଦ୍ଦିଷ୍ଟ ସମୟରେ ଜନନୀ ଦର୍ଶନ ତା ପକ୍ଷେ ସମ୍ଭବ ହେଲା ଯଥା—

ସାର ଦରଶନ ବିଧିକି ସେ ଜନ ନୟନ ମୃଗ ବନ୍ଧ ଫାଶି
ଲାବଣ୍ୟ ଖନିକରଙ୍ଗେ ଜନନୀଙ୍କି ଜାନୁରେ ପ୍ରଣିଦନ ଅପି, ଆଶିଷ
ଭୁଲେ ଦେଲେ ଚୁମ୍ବ ଯୁଗଳୀ

ମଣୋହିତଭୋଠାକୁ ଅବଧାନ ତାକୁ ଦଅନ୍ତି ଅପି ବିପ୍ରଅଳୀ ।

ଦୁହିତାର ଖାଇବା କଥା ବୁଝିବା ମାତାର ଚିରନ୍ତନ ଅଭ୍ୟାସ । ସେ ରାଣୀ ହୁଅନ୍ତୁ ବା ମହାରାଣୀ ହୁଅନ୍ତୁ ଏହି ସ୍ୱାଭାବିକ ଅଭ୍ୟାସ ବର୍ଜନ ତାଙ୍କ ପକ୍ଷେ ଶୋଭନୀୟ ନୁହେଁ କି ସମ୍ଭବପର ନୁହେଁ । ତେଣୁ—

ମାଆ ବେଳେ ବେଳେ କବଳେ କବଳେ ସକୌତ ସବୌଛ ଗ୍ରେପଣେ
ପୀୟୂଷ କଳପ କବଳ ଅଳପ ଅଶନ କରାନ୍ତେ ଅପଣେ, ଛୁରିକ
ପ୍ରକଟ ନକର ଅଗ୍ରେଷେ—ସୁରଭିତ ବନେ ଚର ଆଚମନେ
ରସେ ମଦଗଜ ଗତି ସେ ।

କଥା ଓଡ଼ିଆରେ କହିବାକୁ ଗଲେ ମା' ଗୁଣ୍ଡା ଗୁଣ୍ଡା କରି ରାଣି ପକାଇ ଚକାଇ ଥରକୁ ଥର ଖୁଆନ୍ତି—ମାତ୍ର ଚନ୍ଦ୍ରକଳା ଅଳ୍ପ ଖାଇ ଶୀଘ୍ର ଆଚୋଇପକାଏ । ଓଡ଼ିଆ ଘରର ଏହି ଦୈନନ୍ଦିନ କରଣୀ ଓଡ଼ିଆ କବିଙ୍କ ଲେଖନୀରୁ ଓଡ଼ିଆ ସାହିତ୍ୟ ଜଳନ୍ତରରେ ନିସ୍ତୃତ

ହୋଇଥିଲା—ମାତ୍ର ହାୟ, ସେହି ଜଲନ୍ତର ଅଙ୍ଗ ଓଡ଼ିଶା ଦେଶର ଅନ୍ତର୍ଭୁକ୍ତ ନହୋଇ ତାହାର ମାତୃଭାଷା ହରାଇବା ଉପରେ ଅଛି । ଭାତ ଖାଇଲା ପରେ ଓଡ଼ିଆ ଝିଅ ବା ତାହାର ମା'ର ପଣତ କାନରେ ତାହାର ହାତ ପୋଛେ ନାହିଁ । ଏହି ଅତି ସାଧାରଣ ସତ୍ୟଟି କବି ତାଙ୍କ ସାଧୁ ଉପାୟରେ ବ୍ୟକ୍ତ କରିଛନ୍ତି ।

ଜନନ୍ତି ହୀ ଲଗି ଚେଲାଞ୍ଚଳେ ଯୋଗି ମୋହନମୁଖୀ ମୁଖ ପୋଛେ,
କର୍ପୂର ବଢ଼ପ ବଢ଼ପଲି ଅଲି ଯେନ ହାଜର ହୁଏ ପଛେ,

ତାମ୍ବୁଲ

ଯୋଗଣି ଫରମାସି ମାଏ—ଅନ୍ତର ହୁଅନ୍ତେ
ଖେଳନ୍ତି ସନ୍ତତ ଖଟିବା ଖଟଣୀ ବାମାଏ ।

ଏହି ସବୁ ବର୍ଣ୍ଣନା ପାଠକଲେ ଜଲନ୍ତର ଗୃହୀ ମହଲର ପ୍ରକୃତ ଉଜ୍ଜ୍ୱଳ ପ୍ରେମମୟ ଛବି କାଲ ଗହ୍ୱରରୁ ଉତ୍ଥିତ ହୋଇ ମାନବ ଚକ୍ଷୁର ଅତି ନିକଟରେ ଉଦ୍ଭାସିତ ହୁଏ । ଏହି ହିସାବରେ ଧୂଳିସମ ନୀରସ (Dry as dust) ରୁକ୍ଷ ଇତିହାସର ପୂର୍ବ ବିବରଣୀ ଅପେକ୍ଷା ସାହିତ୍ୟ ଅଧିକ ଉପଯୋଗୀ, ସତ୍ୟ ପ୍ରକାଶରେ ସକ୍ଷମ ଓ ମନୋରଞ୍ଜକ ଅଟେ ।

ଚନ୍ଦ୍ରକଳାର ଯୌବନୋଦ୍‌ଗମ ପରେ ଜନନୀ ସ୍ନେହ ତାଙ୍କ ପକ୍ଷେ ଦୁର୍ଘଟତର ହେବାକୁ ଲାଗିଲା । ଯୌବନ ଲାଭ ଉତ୍ତାରୁ ହେଠଳ ରାଣୀଙ୍କଠାରୁ ସମ୍ବାଦ ଗଲା । ସେ ସମ୍ବାଦ ଶୁଣି ରାଣୀ ଖୁବ୍ ସନ୍ତୁଷ୍ଟ ହେଲେ ଓ "ନିଜ ଘର ଶୋଭିତ ପୁନା ଲତା, ସତେ ହୋଇଲା ମଣି କୁସୁମିତା; ମୋଦ ଅନ୍ୱେଷେ ଶରୀରକୁ ସଜାଇ, ଦେଲେ ନିଜ ଅଙ୍ଗ ଭୂଷା ବଧାଇ" । ଘୋଷିତ ହେଲା ନଗରବାସୀ ଖୁବ୍ ଆନନ୍ଦିତ ହେଲେ । ଠାକୁର ଦର୍ଶନ ଶେଷ ହେଲା । ସର୍ବଶେଷରେ ସଖୀମାନେ—

ଉତ୍ସ କଲେ ମାତାଙ୍କ ଆଗେ ନେଇ
ଦେଲେ ଯୋଡ଼ା ପାଟ ଶାଢ଼ୀ ବଢ଼ାଇ
ଗୁରୁତର ମହାଷେ ମନେ ହସି
ନିଉଁଛୁଳି କର ଶୋଭା ସରସୀ ।

ମସ୍ତି ମଥାରେ ଛୁଇଁ ଜୁହାରିଲ
ରମା ଉପମା ମଣ୍ଡଳୀ ସକଳ
ତୋଳି ଜନନୀ ସ୍ନେହ ସ୍ରୋତେ ପଡ଼ି
ମୁଖ ଚନ୍ଦ୍ରରେ ଚୁମ୍ବି ଗାଢ଼େ ଭିଡ଼ି ।

ଶିଶୁ ସମସ୍ତେଁ ଚଳି ଉଠାଇ ଗଲେ
ଧରନ୍ତି ବୃଦ୍ଧ ଏ ଆଶିଷ ଦେଲେ
କେମା ହାସ୍ତି ମୋ ନୟନ ସମ୍ମୁଖ
ବାବୁ ତୁମ୍ଭ ପରମ ଭାଗ୍ୟବନ୍ତୀ ।

ଅନୁରୂପ ଚକ୍ରବର୍ତ୍ତୀ କୁମାର
ବର ଗ୍ରହଣ କର ଧନ ମୋର

ଜୀବଁ ଶରୀର ଯେବେ ଚିରକାଳ
ଗୁଣ ମଣ୍ଡଳେ ମଣ୍ଡି ହୁଅ କୁଳ ।

ରାଜସେବାସକ୍ତ ଜଳନ୍ଧର ଦେୱାନ ଓ ସଭାପତି ଏହିସବୁ କବିତା ଟଳଶିଲବେଳେ ଜଳନ୍ଧର ରାଣୀଙ୍କୁ ମନରେ ରଖିଥିଲେ ପୁଣି ତାଙ୍କ ହୃଦୟରେ ପାଳିତା କନ୍ୟା ଚନ୍ଦ୍ରକଳା ପ୍ରତି ଥିବା ସ୍ନେହ ମମତା ସଂପୂର୍ଣ୍ଣ ଜାଣିଥିଲେ ବୋଲି କବିଙ୍କର ଏହି ସଂକ୍ରନଚନ୍ଦ୍ର ସୁଧାସ୍ରାବୀ ବାତ୍ସଲ୍ୟ ରସର ଉତ୍ସରୂପେ ଅମ୍ଭମାନଙ୍କର ସନ୍ତାପିତ ମନକୁ ଶୀତଳ କରୁଛି । କାବ୍ୟରେ କବିଙ୍କର ପ୍ରକୃତ ବ୍ୟକ୍ତିତ୍ୱ ଫୁଟି ନ ଉଠିଲେ ପାଠକର ହୃଦୟତନ୍ତ୍ରୀ ବାଜି ଉଠି ନପାରେ । ତେଣୁ କଳ୍ପନା

ମଧୁର ହେବାକୁ ହେଲେ ତାକୁ ବାସ୍ତବତା ଉପରେ ସ୍ଥାପନ କରିବା ଅତ୍ୟନ୍ତ ଆବଶ୍ୟକ । କବିସୂର୍ଯ୍ୟ ଏପରି କରଣୀରେ ଖୁବ୍ କୃତିତ୍ୱ ଦେଖାଇଅଛନ୍ତି—ସେହେତୁ ତାଙ୍କର କବିତା ଏତେ ମଧୁର ଓ ହୃଦୟସ୍ପର୍ଶୀ ହୋଇପାରିଛି ।

ବାତ୍ସଲ୍ୟ ରସର ଆଦାନ ସଙ୍ଗେ ପ୍ରଦାନ ନ ରହିଲେ ତାହା ପୂର୍ଣ୍ଣ ନୁହେଁ । ରାଣୀ ଯେପରି କନ୍ୟାବତ୍ସଳା, ଚନ୍ଦ୍ରକଳା ସେପରି ମାତୃବତ୍ସଳା । ମାତାଙ୍କୁ ସେ ବଡ଼ ସ୍ନେହ କରୁଥିଲେ । ପୁଣି ଯୁବତୀ ହୋଇ ସୁଦ୍ଧା ତାଙ୍କ ସ୍ନେହ ପାଶରୁ ବିମୁକ୍ତ ହେବାକୁ ଟିକେ ଇଚ୍ଛା କରୁ ନଥିଲେ । ଚିତ୍ରବିଦ୍ୟାନିପୁଣା ରାଜହେମା ନିଜ ଶୟନ କକ୍ଷର ବଡ଼ଭିତରେ ଗୋଟିଏ ସୁନ୍ଦର ଛବି ଆଙ୍କିଥିଲେ । ଦିନେ ରାଜମହିଷୀ ହେମାଙ୍କ କକ୍ଷକୁ ଯାଇ ସେହି ଛବିଟି ଦେଖି ପଚାରିଲେ, "କାହାର ଏ ଶିଳ୍ପବିଦ୍ୟା ?" ତାହାର ଉତ୍ତର ଜଣେ ସଖୀ ଦେଲା, "ଜନ୍ମ ଭୂମିର ନଗ୍ରଙ୍ଗ ଖେଳ ଅଭ୍ୟସ୍ତ କରି ହରି ଅଛି କାଳ ଯେ—ଏବେତ ଏ ଚନ୍ଦ୍ରମୂର୍ତ୍ତି ଯେ, ତାରୁଣ୍ୟ ଜାତ ଲଜ୍ଜାରୁ ଶ୍ରୀ ସମ୍ମୁଖରେ ଉଭା ହୋଇ ପାରୁ ନାହିଁ ଯେ ମାତ, "ମୋ ସହୁ ନସହୁ ବିଶେଷ କ୍ଲେଶ, କରି ଭୂମି ପ୍ରତିକୃତି ବିନ୍ୟାସ, ପଦ୍ମୋଦ୍ଭବା କାଳେ ଛିଡ଼ପଲ୍ୟଙ୍କେ, ଥିବା ପରି ଶେଜ କୁମ୍ଭର ଅଙ୍କେ ସେ—ସୁଖେ ନେବ କାଳ ପୁଣି ଗୋ, ବାତ୍ସଲ୍ୟ ପ୍ରମୋଦରସ ଗଦ୍ ଗଦ୍ ଏହା ଶୁଣି ହେଲେ ରାଣୀ ଯେ ।" ଏପରି ନ ହେବାହିଁ ରାଣୀଙ୍କ ପକ୍ଷେ କଠିନ ହୋଇଥାନ୍ତା । ତା'ପରେ ରାଣୀଙ୍କର ହେମାପ୍ରତି ପ୍ରେମମୟ ଉକ୍ତି ଓ ସଖୀମାନଙ୍କ ପ୍ରତି ସଦୟ ଆଦେଶ କବିଙ୍କ କପାଣ୍ଡି ବ୍ୟକ୍ତ କରିବାକୁ କଳାପୂର୍ଣ୍ଣ ଭାବେ ସମର୍ଥ—

ଚନ୍ଦ୍ରାନନ ଗୁରୁ ଚିବୁକେ ପାଣି
ଦେଇ କହିଲେ ଏ ସପ୍ରେମ ବାଣୀ ।

ଅହା ମୁଁ ମରଇତ ପ୍ରାଣବନ୍ଧୁ
ମୋ ଦୁଃଖ ସଙ୍ଗାଳି ଲାବଣ୍ୟସିନ୍ଧୁ
ତୁ କାଲି ଖେଳୁଥିଲୁ ଚୂଳିରେ
ଏବେ ଗୁଣବତୀ ପଣେ ତୋହତୁଲେ ନୋହେ
ଭାରତୀ କି ତୁଳିରେ ।

କାହୁଁ ଶିଖିଲୁରେ ଶିଖଣ୍ଡିବେଶା
ମୋ କୁଳ ନିଳୟୁ ନୂତନ ଭୂଷା
ଏଡେ ମୃଦୁଳ କାୟସୁ ଏମାନ
ଯହିଁ ରହୁନାହିଁ ମୋ ଅନୁମାନ ।
ସ୍ନେହ କେତେ ଜାଣୁ ପ୍ରଣିରେ
ମୋ ଉତ୍ସଙ୍ଗ ସଙ୍ଗ ବିଚ୍ଛେଦ ଭୟୁଁକି
ଏ ଚିହ୍ନ ଅଛୁ ନିର୍ମାଣିରେ ।

କୌଣସି କାବ୍ୟରେ କୌଣସି ନାୟିକାର ଭାଗ୍ୟରେ ଏତେ ବାତ୍ସଲ୍ୟ ସମ୍ଭୋଗ ଘଟିନାହିଁ । ବଣ୍ୟାଶ୍ରମରେ ଏହା ତପୋଧନ କଣ୍ୱଙ୍କଠାରୁ ପାଇବା ଶକୁନ୍ତଳାଙ୍କ ପକ୍ଷେ ଅସମ୍ଭବ । କାରଣ ମୁନିପୋତ୍ତମ ଜଣେ ପୁରୁଷ । ଜନକ ଦୁଲଣୀ ମିଥିଳାନଗରରେ ଏହା ପାଇ ନଥିଲେ । କାରଣ ରାଜାନ୍ତଃପୁରରେ ସୀତା କେବଳ ପାଳୟିତ୍ରୀ କୋଡ଼ରେ ବର୍ଦ୍ଧିତା । ଏହି ସୌଭାଗ୍ୟ ପାଇଥିଲେ ପାଇଥାନ୍ତେ ଲାବଣ୍ୟବତୀ । ମାତ୍ର ଉଞ୍ଜ କବିଙ୍କର ଶୃଙ୍ଗାର ବିହ୍ୱଳିତ ମନ ତାହା ବସ୍ଥଭ ଦେଲନାହିଁ । ଯାହା ଅସଂଯତ ଷହିସୁ କବିଙ୍କ ପକ୍ଷେ ସମ୍ଭବପର ହୋଇ ନଥିଲା ତାହା ସଂଯମୀ ବ୍ରାହ୍ମଣର ସହଜସାଧ୍ୟ ହେଲା । ଏହି ବିଶେଷତ୍ୱ କବିସୂର୍ଯ୍ୟଙ୍କ ଚନ୍ଦ୍ରକଳା କାବ୍ୟରେ କେହି ଭୁଲିବା ଉଚିତ ନୁହେଁ ।

କାମିନୀର ରୂପରେ ପୁରୁଷ ସର୍ବଦା ମୋହିତ । ଏହି ରୂପର ମୋହ ନଥିଲେ ମାନବସମାଜରେ ଭବିଷ୍ୟତ ବଂଶରକ୍ଷା କାର୍ଯ୍ୟ ସରଳ ଗତିରେ ଚାଲି ନପାରେ । ସୌନ୍ଦର୍ଯ୍ୟାନୁଭୂତି ଉତ୍କଣ୍ଠା ମନୁଷ୍ୟର ଅଛି ବୋଲି ତାହାର ଯୌନଲୀଳା ନୀରସ ବୈଜ୍ଞାନିକ ଶୁଷ୍କଜୀବତତ୍ତ୍ୱ ନହୋଇ ସୁନ୍ଦର ସରସ ଓ ରୋମାଞ୍ଚକର ହୋଇ ପାରିଛି । ସ୍ତ୍ରୀ ପୁରୁଷର ପ୍ରେମ ମୂଳରେ ପରସ୍ପର ସୌନ୍ଦର୍ଯ୍ୟାକର୍ଷଣ ରହିଅଛି । Electricity ର Like ଓ unlike poles ପରି ଉଭୟ ଜାତି ପରସ୍ପରକୁ ଆକର୍ଷଣ କରି ମିଳିତ ହୁଅନ୍ତି । ଏହି ଆକର୍ଷଣର ନାମହିଁ ପ୍ରେମ ଓ ସଭ୍ୟ ସମାଜରେ ଏହି ଆକର୍ଷଣକୁ ବିଧିବଦ୍ଧ କରି ବ୍ୟଭିଚାର ମୁଖରୁ ରକ୍ଷା କରାଯାଇଛି । ବିବାହ ନାମକ ସାମାଜିକ ଅନୁଷ୍ଠାନ ଦ୍ୱାରା କାବ୍ୟରେ, ନାୟକ, ନାୟିକାର ଏହି ଆକର୍ଷଣ ଓ ମିଳନ ଚିତ୍ରାକର୍ଷକ କରିବାକୁ କବି ସର୍ବଦା ତତ୍ପର । ସୌନ୍ଦର୍ଯ୍ୟ ବିଜ୍ଞାପନର ପରିମାଣ ଉପରେ ମିଳନର ମାଧୁର୍ଯ୍ୟ ନିର୍ଭର କରେ । ସେ ହେତୁ ଚନ୍ଦ୍ରକଳାର ରୂପ ବର୍ଣ୍ଣନା ପାଇଁ କବି କୌଣସିପ୍ରକାର ଅବହେଳା କରିନାହାନ୍ତି । ବାଲ୍ୟାବସ୍ଥା, କୈଶୋର ଓ ଯୌବନ ବର୍ଣ୍ଣନା କରି କବି ଆମ୍ଭମାନଙ୍କୁ କାମିନୀ ରୂପର ସୌନ୍ଦର୍ଯ୍ୟାନୁଭୋଗରେ ନିମଜ୍ଜିତ କରିଅଛନ୍ତି । ଏହିପରି ପୁଙ୍ଖାନୁପୁଙ୍ଖ ଓ ଆମୂଳଚୂଳ ବର୍ଣ୍ଣନା ଆଧୁନିକ ରୁଚିର ଅନୁକୂଳ ହେଉ ବା ନ ହେଉ ତାହା ପ୍ରାଚୀନ କାଳରୁ ଅଚଳିତ ହୋଇ ଆସୁଥିଲା । ତାହା ଶ୍ରୀହର୍ଷ, ବାଣଭଟ୍ଟଠାରୁ ଆରମ୍ଭ କରି ଉପେନ୍ଦ୍ର ଭଞ୍ଜ ପର୍ଯ୍ୟନ୍ତ କରି ଆସିଅଛନ୍ତି । ସେହି ରୀତି ଅନୁସରଣ କରି କବିସୂର୍ଯ୍ୟ ଚନ୍ଦ୍ରକଳାର ରୂପ ବର୍ଣ୍ଣନା କରିଅଛନ୍ତି । କବି ଯାହା ଭାଷାରେ ବ୍ୟକ୍ତ କରେ ଚିତ୍ରକର ତାହା ତୂଳୀ ଦ୍ୱାରା ଫୁଟାଏ । ମାତ୍ର ଚିତ୍ରଟି ଯେପରି ଆମ୍ଭମାନଙ୍କର ଚକ୍ଷୁ ସମ୍ମୁଖରେ ପ୍ରାଞ୍ଜଳ ଭାବେ ପ୍ରତିଭାତ

ହୋଇଥାଏ, ଭାଷା ଦ୍ୱାରା ବର୍ଣ୍ଣନା—ସେହିପରି ହୋଇପାରେ ନାହିଁ । କିନ୍ତୁ ବାହ୍ୟ ସୌନ୍ଦର୍ଯ୍ୟର ପ୍ରକଟନ ନିମିତ୍ତ ଅପାଦମସ୍ତକ ବର୍ଣ୍ଣନା ବ୍ୟତୀତ ପାଠକ ସମ୍ମୁଖରେ ଜଣେ ରୂପସୀ ରମଣୀର ସୁନ୍ଦର ଛବି ପ୍ରକାଶର ଅନ୍ୟ କି ଉପାୟ ଅଛି ? ତେଣୁ ପ୍ରାଚୀନ କବିମାନଙ୍କର ରୂପ ବର୍ଣ୍ଣନାଶୈଳୀ ପ୍ରତି ତୀବ୍ର କଟାକ୍ଷପାତ କଲା ପୂର୍ବରୁ ପାଠକଙ୍କୁ ଜାଣିରଖିବାକୁ ହେବ ଯେ, ସେମାନେ ପାଠକର ଶ୍ରୁତିରଞ୍ଜନ ନିମନ୍ତେ କେବଳ ନୁହେଁ, ଚକ୍ଷୁରଞ୍ଜନ ପାଇଁ ମଧ୍ୟ କବିତା ଲେଖୁଥିଲେ । ଏହି ହିସାବରେ ସେମାନଙ୍କର କବିତା ଏକାଧାରରେ ଥିଲା, ସଙ୍ଗୀତ ଓ ଚିତ୍ର । କେବଳ ଛବିଟିଏ ଅଙ୍କିଦେଇ କବି ତୃପ୍ତ ନୁହନ୍ତି, ଅଙ୍ଗର ବ୍ୟବହାର, ଗତି ଚଳନ, ଆହାର ବିହାର, ଏପରିକି ତାମ୍ବୁଳ ଚର୍ବଣଠାରୁ ମଧୁଶଯ୍ୟା ଶୟନ ପର୍ଯ୍ୟନ୍ତ ସମସ୍ତ ପ୍ରକାର ଦୈନନ୍ଦିନ କାର୍ଯ୍ୟର ଧାରାବାହିକ ବର୍ଣ୍ଣନ ଦେଇ କବି ତାଙ୍କ ଛନ୍ଦଟିକୁ ଗୋଟିଏ ଚଳଚ୍ଚିତ୍ର କରି ଦିଅନ୍ତି । ଦୃଶ୍ୟ କାବ୍ୟର ବିରଳତା ଚଳଚ୍ଚିତ୍ରର ଅଭାବ ପୁଣି ଛବି ଅଙ୍କନର ଅପରିପକ୍ୱତା ଯୁଗରେ ଉକ୍ତ ରୀତିରେ କାବ୍ୟ ବର୍ଣ୍ଣିତ ନ ହୋଇଥିଲେ ପାଠକ-ମାନଙ୍କର ରୁଚିର ପୂର୍ଣ୍ଣ ତୃପ୍ତି ଆସି ପାରି ନଥାନ୍ତା । ଚନ୍ଦ୍ରକଳା ସକାଳୁ ଉଠି କଣ କରନ୍ତି ତାହା କହିବାକୁ ଯାଇ କବିସୂର୍ଯ୍ୟ କହୁଛନ୍ତି

( ସପ୍ତମ ଛାନ୍ଦ )

ଅରୁଣ ଉଦୟ ସମୟ ସଦୟହୃଦୟା ପଦ୍ମୁଡ଼ ଭାଜିଲା
ଶାଟୀକି ପାଲଟି ଝଳ ଦନ୍ତପାନ୍ତି ହୀରକ କୁରବକ ମାଜିଲା ।
ବାଜିଲା, ଖଣେ ପ୍ରଥମ ନାଡ଼ ଖୁସି,
ସାରିଲା ମାଜଣାକୁ ସେ, ବଦଳିଣି ମାଜନ ମୁଁକୁରସ୍ୟଶ୍ରିଶ୍ରୀ ।
ବହଳ ବଚନ ସ୍ତପବନ ଚନ ଅସନେ ସଜିଲା ଗେଲଇ
ଚୁହିଁ ଅଧରସେ ଶ୍ରୀତ ପାଣି ପାଶେ କଳମା କୁନ୍ତଳ ବୁଲଇ,

ଅଳକେ, ମଣ୍ଡନ ତିଳକ ରେଖାଲି, ଗୁଞ୍ଜମଞ୍ଜୁମାଳା ଜପ ସେ
କମଳା ସ୍ତନାକୁ ଅଧାକ ମାନିଲି ।

ସନ୍ଧ୍ୟାକାଳୀନ ଗୀତର ଗୋଟିଏ ଦୃଷ୍ଟାନ୍ତ ଦେଖନ୍ତୁ,

ବ୍ୟୋମଲତା ଫଳ ମାର୍ତ୍ତଣ୍ଡ ମଣ୍ଡଳ ବାସବ ବାସନ ସମରେ
ପ୍ରାଚୀ ପ୍ରତୀଚୀ ସମୁଦ୍ରେ ଝଡ଼ ପଡ଼ୁଁ କୁମୁଦେ ମାତନ୍ତେ ଭ୍ରମରେ
କୋକଶୋକ, ବଢାଇ ସନ୍ଧ୍ୟା ଦରଶନ,

ସଙ୍ଗୀତ ସଭାକୁ ପୁଣି ଏ ଶୋଭାକୁ ଏଣୁ ତା ଗୀତ ନିତଦାନ । ଲାବଣ୍ୟବତୀ ପର ଚନ୍ଦ୍ରକଳା କାବ୍ୟରେ ମଧ୍ୟ ଲେମାଙ୍କର ବେଶ ବର୍ଣ୍ଣନା କରାଯାଇଛି । ପ୍ରଭେଦ ଏତିକି ଚନ୍ଦ୍ରକଳାର ବେଶ ଦାକ୍ଷିଣାତ୍ୟ ଢଙ୍ଗରେ କରିବା ପାଇଁ ରାଣୀଙ୍କର ଅଦେଶ । ସେ ସମୟରେ ଗଞ୍ଜାମର ଗଡ଼ ମୁଲଗୁଡ଼ିକରେ ଅନେକ ଅନ୍ଧ୍ର ଓ ତାମିଲ ଅଧି ରାଜକାର୍ଯ୍ୟ ବା ଧର୍ମ କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ବିଶେଷତଃ ପାରଳା, ମଞ୍ଜୁଷା, ଜଳନ୍ତର, ଟିକାଲି ପ୍ରଭୃତି ଅଞ୍ଚଳରେ ତେଲଙ୍ଗାମାନଙ୍କର ପ୍ରଭାବ ବିଶେଷ ବିସ୍ତୃତ ହୋଇଥିଲା । ଅନ୍ଧ୍ର ମହିଳାମାନଙ୍କର ଦାକ୍ଷିଣାତ୍ୟ ବେଶକୁ ସେହି ଅଞ୍ଚଳର ଲୋକେ ପସନ୍ଦ କରୁଥିଲେ ପୁଣି ଅନୁକରଣ କରିବାକୁ ଇଚ୍ଛୁକ ଥିଲେ । କବିସୂର୍ଯ୍ୟ ଏ କଥାଟି ତାଙ୍କ ଜଳନ୍ତର ଅଧିଷ୍ଠାନ ସମୟରେ ଦେଖିଥିବେ, ତାଙ୍କ ଦୃଷ୍ଟିରେ ଅନ୍ଧ୍ର ମହିଳାର ବେଶ ସୁନ୍ଦର ପ୍ରତୀୟମାନ ହୋଇଥିବ, ତେଣୁ ଚନ୍ଦ୍ରକଳାଙ୍କୁ ଦାକ୍ଷିଣାତ୍ୟ ବେଶରେ ସଜାଇବାକୁ କବି ଠିକ୍ କରିଥିଲେ । କବି କାଳିଦାସଙ୍କ ଅନୁକରଣ କରି ମେଘର କବି ଗାଇ ଅଛନ୍ତି "ସ୍ୱଭାବ ସୁନ୍ଦର ଅଙ୍ଗକୁ ଜଗତେ ନଦର୍ଶେ କାସ ଶୋଭନ ?" ସେହିପରି ଚନ୍ଦ୍ରକଳାର ଅନିନ୍ଦ୍ୟ ସୁନ୍ଦର ଅଙ୍ଗକୁ ଯେ କୌଣସି ବେଶ ଯେ ସୁନ୍ଦର ଦିଶିବ ଏହା କବି-ସୂର୍ଯ୍ୟଙ୍କୁ ଭଲ ଜଣାଥିଲା,

ଖୋସା ପରବର୍ତ୍ତେ ଚନ୍ଦ୍ରକଳାଙ୍କୁ ସଖୀମାନେ ଚୋଟିଏ ବେଣୀ ପକାଇ ଦେଲେ । ତାହା ବର୍ଣ୍ଣନା କରି କବି କହୁଛନ୍ତି ।

ବେଣୀ ନୁହଇ ସେ କି ଶିଶୁ ଶେଷ
କରି ସୁବଳୟୁ ଧସ୍ତପ୍ରବେଶ,
ସେ ଘେନ ନଥିଲ କଟେକ ଲେଶ,
କଳା ପଢ଼ିଗଲ ନଇ ଅଳସ୍ୟ ସେ
ହେଲ ଏପରି ପ୍ରତୀତ ଯେ,
କେଳିଲୋଳ କଳା କୁଣ୍ଡଳୀ ଘୁର କି ଜପେ ଯାହା କଲେ ମତ ଯେ,

ବେଶଭୂଷା ପ୍ରାୟ ଶେଷ ହେବା ଦେଖି ଜଣେ ସଖୀ ଜେମାଙ୍କ ପାଦରେ ଅଳତା ଦେବା ସମୟରେ ତାହାର ଯେଉଁ ଭ୍ରମ ଜାତ ହେଲ ତାହା ପାଠକଲେ ଜଣାଯାଏ କବି କି କୌଶଳରେ, କି ଚତେଜ ଭାବେ ଚନ୍ଦ୍ରକଳାବରୂପ ବର୍ଣ୍ଣନା କରି ପାଠକର ମନୋରଞ୍ଜନ କରିବାକୁ ଚେଷ୍ଟା କରି ଅଛନ୍ତି ।

ପଙ୍କଜାକୃତ ହେବା ପାଦେ ଦଳି
ଯାବକ ରଖିଥିଲ ଯେଉଁ ବାଳୀ
ସ୍ୱ କର ମଣ୍ଡି ବାମା ବାମ ପାଦେ
ଦକ୍ଷିଣ ଚରଣ ଗୃହେଁ ପ୍ରମୋଦେ ସେ
ଲଭି ସେ ଭାଜନ ଭ୍ରାନ୍ତି ଯେ
ଆଲେଖ୍ୟ ଶଳକା ଗୃଲଣ୍ଡେ ବାଳକା
ଦୃଷ୍ଟି ଦେଲ ମଥା ପୋଛି ଯେ ।

ଏହା ଶୁଣିଲେ ଚନ୍ଦ୍ରକଳାଙ୍କର ହେମ ବର୍ଣ୍ଣ ପାଦ ଓ ଯାବକରଞ୍ଜିତ ପଦତଳ, ସଖୀ ଭ୍ରମରେ ଦକ୍ଷିଣ ପଦକୁ ସୁନା ଅଳତା ପାଣି ଭାବି ତହିଁରେ ଆଲେଖ୍ୟ ଶଲାକାକୁ ବୁଡ଼ାଇବାକୁ ଚେଷ୍ଟା କରିବା ପୁଣି

ସେମାନଙ୍କର ମଥା ଶୋଭା, ମଧୁର ଦରହସ୍ତ ହାସ ଆଖି ଆଗରେ ଝଲସି ଯାଆନ୍ତି । ସଖୀର ଏହି ମଧୁର ଭ୍ରାନ୍ତିର ପରିଣାମ ଅତ୍ୟର ମଧୁରତରେ ହୋଇଛି ।

ଅଳି ହସି କରତାଳିକି ଦେଲ
ଜଣାଇଲେ ଅରେ କର ବର୍ଣ୍ଣନ
ସମ୍ପାଦକୁ ଭଲ ଲବଣ୍ୟ ଭୁଲି
ଭ୍ରମି ଯିବ ତ ତାହାର ମତି ଯେ
ଏହାର କି ଦୋଷ ହେଲା ଯେ

କାହାର କବିର କଞ୍ଚି ଯୁଡ ତୋଟେ ତାହାର ସୁକୃତ ଭଲ ଯେ । ଅତିଲେଖ୍ୟ, ଅଲେଖ୍ୟ ଶଳାକା, ଅଲେଖ୍ୟ ପାତ୍ର, ଏମନ୍ତ କି ଚନ୍ଦ୍ରକଳାପରି ରାଜକନ୍ୟା ପାଇବା ଦୁଷ୍କର ହୋଇ ନ ପାରେ, ମାତ୍ର କବିସୂର୍ଯ୍ୟଙ୍କ ବିନା ଏହି ପଦାବଳୀ, ଏହି ବିଶଦ ବର୍ଣ୍ଣନା କୌଶଳ, ଏହି ଶାନ୍ତ ସ୍ଥିର ଆନନ୍ଦ ଗନ୍ଧବହର ମୃଦୁ ମନ୍ଦ ଲୀଳା ଅନ୍ୟ ପକ୍ଷେ ସମ୍ଭବପର ନୁହେଁ । ଚନ୍ଦ୍ରକଳା କାବ୍ୟରେ ବସନ୍ତରେ ବନ ବିହାର ଓ ଜଳକେଳି ଲାବଣ୍ୟବତୀ କିମ୍ବା ନୈଷଧଠାରୁ କିଛି ବିଶିଷ୍ଟ ନୁହେଁ । ମାତ୍ର ଲାବଣ୍ୟବତୀ ଓ ଚନ୍ଦ୍ରକଳାରେ କୋଟିଏ ବର୍ଣ୍ଣନା ସାମଞ୍ଜସ୍ୟ ଲକ୍ଷ୍ୟ କରିବାର ବିଷୟ । ତନ୍ମାଗରୁ ଅଙ୍ଗନା ବୋଲି ବିସ୍ତର କର ଉଦୟ କବି ସେମାନଙ୍କର ପ୍ରମାଣ ଦେଇଛନ୍ତି । ଭଞ୍ଜଙ୍କ ମତରେ,

ନାରୀ କାହି କାହି ନୋହିଲେ ଖଡ଼ିଏ ଯାଏ
ହାସକୁମୁଦ, ନେତ୍ରମୀନ, ମୁଖ କମଳ ପ୍ରାୟେ
ଜଘନ ପୁଳିନ ଉରଜ ଚକ୍ରବାକ ମିଥୁନ
ରୋମାବଳୀ ଅଳିଆବଳୀ ଗତି ହଂସ ସମାନ

ଉଦର କମଳ ପଲ୍ଲବ, ନାଭି କୂଳ ଭଉଁରୀ
କର କୋକନଦ, ସୁବାହୁ ଯହିଁ ମୃଣାଳ ସରି

କବିସୂର୍ଯ୍ୟଙ୍କ ଉପମା ଅଉ ଟିକିଏ ବିସ୍ତାରିତ—

ଗୃହିଁରେ ଚିହ୍ନ ଦରଶନ ଚକିତ ଚମରୀ ଶୃଙ୍ଖଳନୟନା
ତୋଅଙ୍ଗ ଅଲଙ୍କାର ଲୋକେ ଉଡ଼ାଗ ବେଶେ ହୋଇଛୁ ଅଙ୍ଗନା ସେ

ଚଳାଚଳ ଶଫରୀ—ଲୀଳାଚଳ ବାଳା ନେତ୍ର ପର ସେ,
ଅରବିନ୍ଦତ ବଦନ ସରି ସେ । ୧୧ ।

ଉଳନ୍ତ ସନ୍ତତ ବୃନ୍ତ ଗ୍ରୀବା କାନ୍ତ ଶ୍ରେଣିରି କମ୍ବୁ ପରି ଦିଶେ
ଅଳଙ୍କିତ ଅଙ୍ଗ ପୃଥୁଳ ଉଆଙ୍ଗ ମିଥୁନ ସ୍ତନ ସଦୃଶେ ଯେ

ସତତ କେତେ ସୁଗମ, ଜଳମାଳୀ ସ୍ରେମସ୍ତକ ସମ ଗୋ
ଜଳଭ୍ରମି ନାଭି ହ୍ରଦୋପମ ଗୋ ।୧୨।

ହେବ ସେ ସାନ ଅବଳୀ ନିବଳୀରୁ ବଳିଛି କଲନା କର
ଏହା ଲଭସୀ କ ଉରୁ କଳିଶୀ କି ତୁଳ ଦେଲେ ତସ୍କର ଗୋ

ରସେ ରହିଛି ପୁଣି—କୋକନଦ ପାଣି ପାଦ ପରିରେ—
କୂର୍ମ ଜଘନା ଏ ବର ନାଗରେ । ୧୩ ।

ଏହି ଦୁଇଟି ଛନ୍ଦ ପଦ୍ମସ୍ତର ନିକଟରେ ରଖି ମୁଁ ଦେଖାଇ ଦେବାକୁ ଚାହେଁ ଯେ କବିସୂର୍ଯ୍ୟ ଉଞ୍ଜଙ୍କର ବା ପ୍ରାଚୀନ ପାଠକୁ ଅବଲମ୍ବନ କରିଥିଲେ ମୁଦ୍ଧା, ତାହା ସଂପୂର୍ଣ୍ଣ ପଦ ପଦଂକ ଅନୁକରଣ ନୁହେଁ,ସେ କଙ୍କାଳଟିକୁ କେବଳ ଧରି ଅଣି ରକ୍ତ ମାଂସ ପାଇଁ ଅନ୍ୟ ନିର୍ଭରଶୀଳ ହୋଇଥିଲେ—ଅନେକେ, କିମ୍ବା ଭାଷାନ୍ତର, ସେ ନିଜର ମୌଳିକତା ରକ୍ଷିବାର ଚେଷ୍ଟାରେ ଖୁବ୍ କୃତକାର୍ଯ୍ୟ ହୋଇ ଅଛନ୍ତି

ବୋଲି ମନେହୁଏ । ସେ ଅନ୍ୟର ଅନୁକରଣ କରି ନିଜର ବ୍ୟକ୍ତିତ୍ୱକୁ ହରାଇ ନାହାନ୍ତି । ଏହା ଗୋଟିଏ ଖୁବ୍ ବଡ଼ ଓ ଲକ୍ଷ୍ୟ କରିବାର ବିଷୟ । କବିସୂର୍ଯ୍ୟଙ୍କ ଭାଷା, ଶୈଳୀ ଓ ଭାବର ବ୍ୟକ୍ତିତ୍ୱ ଏତେ ଅଧିକ ଯେ ସାମାନ୍ୟ ଅଭ୍ୟାସ କଲେ କେଉଁ ଲେଖାଟି ତାଙ୍କର ଓ କେଉଁଟି ଅନ୍ୟର କହି ହୋଇଯାଏ । ସାହିତ୍ୟ କ୍ଷେତ୍ରରେ ଏପରି ବ୍ୟକ୍ତିତ୍ୱ, ପ୍ରତିଭାର ବିକାଶ ସବୁ କବିଙ୍କ ଭାଗ୍ୟରେ ଘଟେ ନାହିଁ ।

ଚନ୍ଦ୍ରକଳାର ବିବାହଯୋଗ୍ୟ ବୟସ ହେଲା ତେଣୁ ତାଙ୍କ ପରିଣୟ ମନ୍ତ୍ରଣା ରାଜା କରିବାକୁ ଲାଗିଲେ । ମନ୍ତ୍ରୀ କହିଲେ ଭୂମଣ୍ଡଳରେ କନ୍ୟାର ଅନୁରୂପ ବର ଦୁର୍ଲଭ ଅଟେ । ଏହା ସାମୁଲି କଥା । ଏତିକି କହିବାକୁ ମନ୍ତ୍ରୀ ପ୍ରାୟ ୩୦ଟି ପଦ୍ୟ ପଂକ୍ତି ବ୍ୟୟ କରିଛନ୍ତି । ଏପରି ସାରା ରାତିଟି ମନ୍ତ୍ରଣାରେ ଯାଇଗଲା, ମାତ୍ର କୌଣସି ସମାଧାରେ ଦୁହେଁ ଉପନୀତ ହେବାର ଲେଖା-ନାହିଁ । ପରିଶେଷରେ ରାଜାଙ୍କୁ ଜଣେ ଐନ୍ଦ୍ରଜାଲିକର ଆଶ୍ରୟ ନେବାକୁ ହେଲା । ତାକୁ ଭାର ଦିଆଗଲା ଯେ ସେ ଦେଶ, ବିଦେଶ ବୁଲି ଜେମା ଅନୁରୂପ ବର ଖୋଜି ବାହାର କରିବ । ରାଜାଙ୍କର ଆଦେଶରେ "ନେତି ନେତି" ନୀତି ନଥିଲା । ସେ ମାୟାବୀ ନଟରାଜ କେତେଗୁଡ଼ିଏ ଗୁଣ କହିଦେଲେ ଯାହାକୁ ଧରି ବର ଠିକ କରି ପାରିବ । ତେବେ ମାୟାବୀ ତାହାର ଇନ୍ଦ୍ରଜାଲ ବିସ୍ତାର କରି ମାୟା ଜେମାଙ୍କୁ ଦେଖାଇଲା ପରେ ତାହାର ପରିଣାମ କ'ଣ ହେଲା ରାଜା ଗ୍ରନ୍ଥରେ ଜଣାଇବ । ଠିକ୍ ଏହି ଆଦେଶ ପରିପାଳନ କରି ନଟବ୍ରଜ, ମହାରାଜ ଘୋଷପୁରକୁ ଯାଇ ଯୁବରାଜଙ୍କ ନିକଟରେ ଯେଉଁ ଅଦ୍ଭୁତ କରଣି କଲା ତାହା ବିଶ୍ୱାସର ଯୋଗ୍ୟ ନୁହେଁ । ମାତ୍ର ଏଥିରେ ଗୁରୁ ସ୍ୱୟଂ ଉପେନ୍ଦ୍ର ଭଞ୍ଜ ଓ ଶିଷ୍ୟ କବିସୂର୍ଯ୍ୟ । ବିଶ୍ୱାସ

ଶର ବା ନଶର ଇନ୍ଦ୍ରଜାଲଟିର ବିବରଣ ଅଟେ ଶୁଣିଯାଅ ।

ଏପରି ନାଗସ୍ୱାମିଣି ସେବିତ ନାଗସ୍ୱାମିଣି ପ୍ରୀତିକି ନାଗ୍ନର ମଣି
ଚେତେବ ବିଭବ

ମଦନଦର ଦନ୍ତୀର ଦଶାରେ ଦିବସାନ୍ତର ତୁଅନ୍ତେ ନଷ୍ଟପ୍ରଭଷ୍ଟ
ବଲ୍ଲ ପ୍ରଣୟ ।

ଦିନଥାଉ ହେଲା ତ୍ରିଯାମା, ପିନ୍ଧିଲା ବ୍ୟୋମ ଅନ୍ଧାର ସୁନୀଳ ଜାମା
ନିଦଶିଲ ସଖୀଅଳୀ ଜଳିଲା ପ୍ରଦୀପାବଳୀ
ଜଳି ଲଳିତ ଉଦଶ୍ୱ ତନୁ କମ୍ପିଲା

ମିଶିଗଲା ଗୃହଜନେବ, ଦିଶିଗଲା ଦୁଇଗାଣ ସମ୍ପ୍ରୀଲକ ହୋଇ
ସ୍ମର ଶରେ କମ୍ପିଲା ।

ଜହ୍ନ ଜହ୍ନ କର ଶବୃକେ—ଛନ୍ଦିଲା କେପଥୁ ଦୁଇ ଶ୍ରୀଅଙ୍ଗ ଯାକେ
(୨୮)

ଏନରେ ମୁଁ ମହାଗଜ ଘୋଷ ମହେନ୍ଦ୍ର ତନୁଜ
ଧନଦେ ମୁଁ ସରସିଜ କୁଳ ଦୁଲାଳୀ

ଏତେମାନ ସଂଲାପରେ ପ୍ରସୂନ ଗୃପ ରେପରେ
ଗଲାଗୁନ୍ଥା ପରି ଦୁଇ ଶରୀର ଝାଳି

ପରସ୍ପର ରଦନ ବାସ କଷଟେଡ଼ି ପୀଡ଼ି ପାଇଲେ ତହୁଁ ପୀୟୂଷ

ଏହ୍ମାପରେ ନଷ୍ଟ ଗୀତ ଗାଇବାରୁ ମାୟା ଜେମା ପ୍ରଭୃତି ଏକା-କେଳେକେ ଅନ୍ତର୍ହିତ ହେଲେ । ଠିକ୍ ସେତିକି ବେଳେ "ସେ ଦିନ ସେହି ସମୟେ" ଚନ୍ଦ୍ରକଳା ସ୍ୱପ୍ନରେ ଅନଙ୍ଗ ସୁନ୍ଦରଙ୍କ ସମ୍ଭୋଗ ଲଭିକଲା । ସ୍ୱପ୍ନପର ନାୟିକାର ବିଳାପ ଅନ୍ୟ ଏକ ଛାନ୍ଦରେ ବର୍ଣ୍ଣିତ ହୋଇଅଛି । ଏହି ଛାନ୍ଦଟି ଅସଂପୂର୍ଣ୍ଣ କାବ୍ୟର ଶେଷ ଛାନ୍ଦ ରୂପେ ଦିଆଯାଇଛି । ଛାନ୍ଦର ଶେଷ ଭାଗରେ ଜଣେ ସଖୀ

ସେମାନଙ୍କର ବିରହ ଖେଦ ଦେଖି କହୁଛନ୍ତି "ଅଙ୍ଗୀକୃତ ଭଙ୍ଗି ସନ୍ଦେଶରେ ପୂରିଥିବ, ଦୂରେଥାଉ ହୃଦ ଦରଶନ ମହୋତ୍ସବ, ନଦେଖିଲେ ପ୍ରିୟ ଲେଖ ସ୍ୱପନକୁ ସତ ମଣି ଲଭିବ ଟେ ସୁଖ," ଏହାର ଉତ୍ତରରେ କୁନ୍ଦଲତା "କହୁଲ ଗୁପ୍ତ ଜଣାଣ ଲେଖିବା" ମାତ୍ର ଏହି ଛାନ୍ଦର ପୂର୍ବବର୍ତ୍ତୀ ଛାନ୍ଦ ଗୁଡ଼ିକରେ ନାୟକ ନାୟିକାଙ୍କ ଫେରି ପତ୍ରର ଆଦାନପ୍ରଦାନ, ନାୟକର ବିଦେଶରୁ ଫେରି ପୁଣି ମିଳନ ଓ ସମ୍ଭୋଗର ଗୂଢ଼ତତ୍ତ୍ୱ ବର୍ଣ୍ଣିତ ହୋଇଛନ୍ତି । କେଉଁଟି ଆଗ, କେଉଁଟି ପଛ ଠିକ୍ ଭାବେ ଜଣାଯାଉ ନାହିଁ । ତେଣୁ କାବ୍ୟର ଏପରି ମାଝାଢ଼ିକା ଅବସ୍ଥାରେ ସମାଲୋଚନା ଦ୍ୱାରା କବିଙ୍କୁ ତାଙ୍କ ନ୍ୟାଯ୍ୟ ପ୍ରାପ୍ୟରୁ ବଞ୍ଚିତ କରିବା ଯେପରି ଅନ୍ୟାୟମୂଳକ, ସମାଲୋଚକ ପକ୍ଷେ ମଧ୍ୟ ସେପରି ବିପଜ୍ଜନକ ଅଟେ । ତେଣୁ ଲେଖକ ସେଥିରୁ କ୍ଷାନ୍ତ ହେଲ ।

ଚନ୍ଦ୍ରକଳା ଯେଉଁ କାରଣରୁ ଅସମ୍ପୂର୍ଣ୍ଣ ରହି ଯାଇଛି, ତାହା କବିସୂର୍ଯ୍ୟଙ୍କ ପ୍ରତିଭା ବିକାଶରେ ସମ୍ପୂର୍ଣ୍ଣ ସମର୍ଥ, ମାତ୍ର ତାହାର ଅସମ୍ପୂର୍ଣ୍ଣତା ଉତ୍କଳବାସୀଙ୍କର ଦୁର୍ଭାଗ୍ୟ । ମୋର ଆଶା କରିବାକୁ ଇଚ୍ଛାହୁଏ ଯେ, ଚନ୍ଦ୍ରକଳା କାବ୍ୟଟି ସମ୍ପୂର୍ଣ୍ଣ ହୋଇନଥିଲେ ସୁଦ୍ଧା ତାହାର କିୟଦଂଶ ମାତ୍ର ବର୍ତ୍ତମାନ ଆମ୍ଭମାନଙ୍କର ହସ୍ତଗତ ହୋଇଅଛି । ଅନ୍ୟ ଛାନ୍ଦଗୁଡ଼ିକ ଅତୀତ ଗର୍ଭରେ ଲୁକ୍କାୟିତ ହୋଇ ରହିଅଛନ୍ତି । ଚନ୍ଦ୍ରକଳାର ଅସମ୍ପୂର୍ଣ୍ଣ ଅବସ୍ଥା ଦେଖିଲେ କୋଣାର୍କ ମନ୍ଦିରର ଭଗ୍ନାବସ୍ଥା ମନେପଡ଼େ । ପୁଣି ମନରେ ଗଭୀର ଖେଦ ଜାତ ହୁଏ ଯେ, ଓଡ଼ିଆ ଜାତି କେଉଁ ଅଜଣା ଦୋଷରୁ କେଉଁ ଅଜ୍ଞାତ ଦେବତାଙ୍କ ଦ୍ୱାରା ସବୁ କାଳରେ ଅଭିଶପ୍ତ । ଲବାଣ୍ୟଧ୍ୱଜର ଶାପ ମୋଚନ ପାଇଁ ଏହି ମହତ୍ ଜାତିର ଶାପ କ୍ଷାଳିତ ହେଉ ଏହାହିଁ ବିଭୁଙ୍କ ପଦରେ କାତର ପ୍ରାର୍ଥନା ।

# ସାହିତ୍ୟ ସମସ୍ୟା

ଓଡ଼ିଆ ସାହିତ୍ୟରେ କୌଣସି ସମସ୍ୟା ଅଛିକି ? ଯଦି ଅଛି, ତେବେ ତାହା ନୂତନ ବା ପୁରାତନ ? ଯଦି ପୁରାତନ, ତେବେ ଆଜି ପର୍ଯ୍ୟନ୍ତ ତାହାର ସମାଧାନ ହୋଇ ନାହିଁ କାହିଁକି ? ଯଦି ନୂତନ, ତେବେ ବର୍ତ୍ତମାନର କେଉଁ ପରିସ୍ଥିତି ହେତୁ ଏହି ସମସ୍ୟା ଉପୁଜିଛି ଓ ଏହି ସମସ୍ୟା କ'ଣ ? ପୁଣି ଏହି ସମାଧାନ ନିମନ୍ତେ ଶିକ୍ଷା ଓ ଭାଷା ସମସ୍ୟାର ବିଚାର ଓ ଆଲୋଚନା କେତେଦୂର ସଙ୍ଗତ ଓ ସମୀଚୀନ ? ଏହି ସମସ୍ତ ପ୍ରଶ୍ନର ବିଚାର ଓ ଉତ୍ତରହିଁ ଏହି ପ୍ରବନ୍ଧର ବକ୍ତବ୍ୟ ବସ୍ତୁ ।

ବର୍ତ୍ତମାନ ସମସ୍ୟା—ଏହି ଦୁଇଟି ପଦର ଗୁରୁତ୍ୱ ଉପଲବ୍ଧି ନକରି ଗତାନୁଗତିକ ଭାବେ ଆମ୍ଭମାନଙ୍କର ଚିନ୍ତାଧାରାକୁ ଖେଳାଇଲେ ସମାଧାନର ନିକଟତର ହେବା ଆମ୍ଭମାନଙ୍କ ପକ୍ଷେ ସମ୍ଭବପର ହେବ ନାହିଁ । ପରାଧୀନ ଦେଶର ସମସ୍ୟା ଓ ସ୍ୱାଧୀନ ଦେଶର ସମସ୍ୟା ପୃଥକ୍ । ତେଣୁ ଭାରତର ସ୍ୱାଧୀନତା ସଂଗ୍ରାମର ତିରୋଧାନ ଓ ସ୍ୱରାଜ୍ୟ ସ୍ଥାପନ ପରେ ପ୍ରତ୍ୟେକ ବିଷୟରେ ଆମ୍ଭମାନଙ୍କର ଦୃଷ୍ଟି

ଭଙ୍ଗୀ ଓ ଆଦର୍ଶର ବେଶ ପରିବର୍ତ୍ତନ ଘଟିଅଛି । ଏହି ପରିବର୍ତ୍ତନ ସାହିତ୍ୟ କ୍ଷେତ୍ରରେ ମଧ୍ୟ ଦ୍ରଷ୍ଟବ୍ୟ । ପରାଧୀନ ଭାରତରେ ଆମ୍ଭମାନଙ୍କର ଯତ୍ପରୋନାସ୍ତି ବିରୋଧ ସତ୍ତ୍ୱେ, ଆମ୍ଭମାନଙ୍କର ପ୍ରତ୍ୟେକ କ୍ଷେତ୍ରରେ ମ୍ଳାନ ମନୋଭାବର ବାତାବରଣ ଆମ୍ଭମାନଙ୍କୁ ଘେରିଯାଇ ରହିଥିଲା । ତେଣୁ ବ୍ରିଟିଶ ଶାସନ ଫଳରେ କେବଳ ସ୍ୱାଧୀନତା କାହିଁକି ଜାତୀୟ କୃଷ୍ଟି ବା ସଂସ୍କୃତି କ୍ରମେ କ୍ରମେ ଅଧୋଗତି ଲାଭ କରୁଥିଲା । ଆମ୍ଭେମାନେ ଆମ୍ଭମାନଙ୍କର ସଂସ୍କୃତି ହରାଇବା ଉପରେ ଥିଲୁ । ସୁଖର କଥା ସଂପୂର୍ଣ୍ଣରୂପେ ଜାତୀୟ ସଂସ୍କୃତି ନଷ୍ଟ ହେବା ପୂର୍ବରୁ ଆମ୍ଭେମାନେ ସ୍ୱାଧୀନତା ପାଇଅଛୁଁ ଓ ଏହା ଫଳରେ ପୁନର୍ବାର ଆମ୍ଭମାନଙ୍କର ପୂର୍ଣ୍ଣ ସଂସ୍କୃତି ଲାଭ ହୋଇ ପାରିବ, ଏଥିରେ କିଛି ସନ୍ଦେହ ନାହିଁ । ଭାରତ ଉନ୍ନତ ଶିଳ୍ପ ବ୍ରିଟିଶ ହାତର ପଣ୍ୟ ବଜାର ରୂପେ ଦୀର୍ଘ ଦୁଇଶହ ବର୍ଷ ରହି ଯେପରି ତାହାର ଶିଳ୍ପୋନ୍ନତି କଥା ଏକାବେଳକେ ଭୁଲିଗଲା, ତୁହାକୁ ତୁହା କୃଷି କର୍ମର ଉତ୍କୃଷ୍ଟତା ପଲ୍ଲୀଜୀବନର ସରଳତା ସମ୍ବନ୍ଧେ ବକ୍ତୃତା ଶୁଣି ଶୁଣି ନିଜର ଅର୍ଥନୀତିକୁ ଦରିଦ୍ର କରିଦେଲା, ଭୌତିକ ବିଜ୍ଞାନର ଆଲୋକ ଛଟାରେ ଯେପରି ଭାରତୀୟ ତାହାର ପୁରାତନ ବିଜ୍ଞାନର ଶିଅକୁ ଏକାବେଳକେ ଛାଡ଼ିଦେଇ ବିଦେଶୀ ଅନୁକରଣରେ ଅକ୍ଷରାଭ୍ୟାସ କରିବାକୁ ଲାଗିଲା, ସେହିପରି ସାହିତ୍ୟରେ ମଧ୍ୟ ଭାଷାର ସ୍ୱାଭାବିକ କ୍ରମଗତିକୁ ଭୁଲିଯାଇ ସେ ଇଂରାଜୀ ସାହିତ୍ୟର ଅନ୍ଧ ଅନୁକରଣରେ ନିଜର ସମସ୍ତ ଭାଷା ଓ ସାହିତ୍ୟକୁ ବିକଳାଙ୍ଗ କଲା । ସର୍ଜନାର ଉତ୍ସରୁ ଦେଶବାସୀଙ୍କୁ ଜଳ ନ ଯୋଗାଇ ଅନୁକରଣ ଦୂଷିତ ଓ ପର୍ଯ୍ୟୁଷିତ ସାହିତ୍ୟ ଦେଶସାରା ବାଣ୍ଟିବାକୁ ଲାଗିଲା । ଯଦୁମଣି, ଭଞ୍ଜ, କବିସୂର୍ଯ୍ୟ, ଗୋପାଳକୃଷ୍ଣ ଓଡ଼ିଆ ସାହିତ୍ୟରେ ଯେଉଁ ନିର୍ମଳ ପୟଃ ପ୍ରଣାଳୀକୁ ଅତି ଯତ୍ନର ସହ ଇତର ଜାତିର ସ୍ପର୍ଶରୁ

ରକ୍ଷା କରି ତାହାର ନିର୍ମଳତା, ମାଧୁର୍ଯ୍ୟ ଓ ପବିତ୍ରତା ରକ୍ଷା କରିଥିଲେ, ତାଙ୍କ ବଂଶଧରମାନେ ବ୍ରିଟିଶ ଭାଷା, ଭାବ ଓ ସଂସ୍କୃତିର ଅନୁକରଣ ଦ୍ୱାରା ସେହି ପ୍ରଣାଳୀର ନଳଗୁଡ଼ିକୁ ଏକାବେଳକେ ପରିବର୍ତ୍ତନ କଲେ । ଏହି ବଂଶଧରମାନେ ଭାବିଲେ ଏପରି କରିବାହିଁ ଦେଶ ଓ ଜାତିର ଉନ୍ନତିର ଏକମାତ୍ର ମାର୍ଗ । ଏହା ନକଲେ ଆମ୍ଭମାନଙ୍କୁ କୁସଂସ୍କାରାଚ୍ଛନ୍ନ ଅନ୍ଧକାର ରାଜ୍ୟରେ ବାସ କରିବାକୁ ହେବ । ପଶ୍ଚିମ ସୂର୍ଯ୍ୟର ଉଦୟ ବିନା ଅନ୍ଧକାର ରାତ୍ରିର ଅବସାନ ଅସମ୍ଭବ, ଏହି ଅସ୍ୱାଭାବିକ ଭାବଧାରା ଆମ୍ଭମାନଙ୍କୁ ପରାଧୀନ ପରିସ୍ଥିତିରେ ଏକାବେଳକେ ଆବଦ୍ଧ କରି ଦେଇଥିଲା । ତେଣୁ ସେହି ଦିନଠାରୁ ଆଜଯାଏଁ ଆମ୍ଭମାନଙ୍କର ସାହିତ୍ୟର ଯେଉଁ ଗତି ହୋଇଛି, ସେହି ଗତିକୁ ଆମ୍ଭେମାନେ କହିବା ଉନ୍ନତି ନା ଅବନତି ? ଗାନ୍ଧିଜୀଙ୍କୁ ଏପରି ଏକ ପ୍ରଶ୍ନର ଉତ୍ତର ଦେବାକୁ ହୋଇଥିଲା । ଭାରତରେ ପାଶ୍ଚାତ୍ୟ ସଂସ୍କୃତିର ଆବଶ୍ୟକତାକୁ ଖଣ୍ଡନ କରି ସେ କହିଥିଲେ,

"No one has disputed the importance of the influence of Westeren culture. What is resented is the sacrifice of India or Eastern culture on the altar of the Westeren."

ଗାନ୍ଧିଜୀଙ୍କର ଏଥି ସମ୍ବନ୍ଧରେ ଖୁବ୍ ଟାଣ ମନ୍ତବ୍ୟ ଥିଲା । ସେ ସଭ୍ୟତା, ଉନ୍ନତି, ବିଜ୍ଞାନ, ଆଧୁନିକତା ନାମରେ ଭାରତୀୟ କୃଷ୍ଟିର ଅବମାନନା ମୋଟେ ବରଦାସ୍ତ କରି ନଥିଲେ । କେବଳ ରାଜନୀତିରେ ନୁହେଁ ସାହିତ୍ୟ, ଶିକ୍ଷା, ସଂସ୍କୃତି ଏହି ସବୁ କ୍ଷେତ୍ରରେ ମଧ୍ୟ ସେ ଲଢ଼ିଥିଲେ । ବୈଦେଶିକ ଦାସାନୁକରଣର ବିରୁଦ୍ଧରେ କହିବା ବାହୁଲ୍ୟ । ସେ ବହୁବର୍ଷ ବ୍ୟାପୀ ବ୍ରିଟିଶ କୃଷ୍ଟିର ପ୍ରଭାବରୁ

ସମଗ୍ର ଦେଶକୁ ରକ୍ଷା କରିଥିଲେ, ତଥାଚ, ଆଜି ଏହି ସ୍ୱାଧୀନତା'ର ବାତାବରଣ, ସ୍ୱାଧୀନ ପ୍ରାଣର ନୂତନ ପ୍ରେରଣାରେ ସୁଦ୍ଧା ସେହି ବୈଦେଶିକ ପ୍ରଭାବ ଜନିତ ହୀନ ମନୋଭାବ ଆମ୍ଭମାନଙ୍କର, ବିଶେଷତଃ ଶିକ୍ଷିତ ବ୍ୟକ୍ତିମାନଙ୍କର ମନରୁ ଆଦୌ ଅପସରି ଯାଇ ନାହିଁ । ଉଚ୍ଚ ଶିକ୍ଷାର କେନ୍ଦ୍ର ଯେଉଁମାନଙ୍କର ଅଧୀନ, ସେମାନେ ମଧ୍ୟ ସେ ପରାଧୀନକାଳୀନ ହୀନ ମନୋଭାବର ଆଶ୍ରୟ କରି ଜାତିକୁ ନୂତନ ଭାବ ଓ ପ୍ରେରଣା ଦେବାକୁ ସମର୍ଥ ହୋଇ ନାହାନ୍ତି । ଏହିସବୁ କାରଣରୁ ଅଭାବ ଆମ୍ଭମାନଙ୍କ ସାହିତ୍ୟରେ ଗୋଟିଏ ପ୍ରଧାନ ସମସ୍ୟା, ଦୃଷ୍ଟାନ୍ତ ସ୍ୱରୂପ କହିବାକୁ ଗଲେ ସାହିତ୍ୟ ଦିଗରେ ଆମ୍ଭମାନଙ୍କ ବିଶ୍ୱବିଦ୍ୟାଳୟର ଚେଷ୍ଟା ଦେଖାଯାଉ । ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଯେଉଁ ଶହ ଶହ ଉଚ୍ଚ ଉପାଧ୍ୟାୟ ଅଧ୍ୟାପକ ଓ ଅଧିକାରୀ ଅଛନ୍ତି ସେମାନଙ୍କ ସଂଖ୍ୟା ତୁଳନାରେ ସେମାନଙ୍କର ଦେଶର ସାହିତ୍ୟ ଓ କୃଷ୍ଟିକୁ ଦାନ ଅତି ଅଳ୍ପ ମାତ୍ର । ଏଥିପାଇଁ ସେମାନେ କେବଳ ଦାୟୀ ନୁହନ୍ତି । ସେହି ମୂର୍ଖତାର ମନୋଭାବ, ସେହି ଧାରଣା ରହିଛି ଯେ ସେମାନେ ଗୋଟିଏ ସଭ୍ୟ ଜାତିର ଅଙ୍ଗ ବିଶେଷ ଓ ସେମାନଙ୍କର ଦେଶବାସୀଙ୍କ ସହିତ ସମ୍ବନ୍ଧ ଅତିଶୟ ନୈତିକ ଓ ନିବିଡ଼ ଭାବନ ସମ୍ପନ୍ନ । କେବଳ ଉତ୍କଳ ନୁହେଁ, ଭାରତବର୍ଷର କୌଣସି ବିଶ୍ୱବିଦ୍ୟାଳୟ ଆଖିକୁ ଦିଶିଲାଭଳି କୌଣସି ଉନ୍ନତମୂଳକ ଯୋଜନାରେ ଆଜି ପର୍ଯ୍ୟନ୍ତ ଆଦୌ ହାତ ଦେଇ ନାହାନ୍ତି । ଅବଶ୍ୟ ଉସମାନିଆ ବିଶ୍ୱବିଦ୍ୟାଳୟ ଓ ବିଶ୍ୱଭାରତୀର କାର୍ଯ୍ୟ ଏହି ଦିଗରେ ପ୍ରଶଂସନୀୟ । ବିଶ୍ୱବିଦ୍ୟାଳୟ ବିଷୟ ଉତ୍ଥାପନର ଉଦ୍ଦେଶ୍ୟ ଏହି ଯେ ଇଂରେଜଙ୍କ ତତ୍ତ୍ୱାବଧାନରେ ମଧ୍ୟ ଦେଶର ସାହିତ୍ୟ ଗତିରେ ପରାଧୀନତାର କୌଣସି ପରିବର୍ତ୍ତନ ଘଟିନାହିଁ । ଏହା ଏକ ସମସ୍ୟା ଓ ଏହାର ଆଶୁ ସମାଧାନ ଆବଶ୍ୟକ ।

ସ୍ୱାଧୀନ ଭାରତର ଭାଷା ଏକ ନୁହେଁ । କେତେକଙ୍କ ମତରେ କୃଷ୍ଟି ମଧ୍ୟ ଏକ ନୁହେଁ । ବହୁ ଭାଷାଭାଷୀ, ବହୁ କୃଷ୍ଟିବିଶିଷ୍ଟ ଆମର ଏହି ମାତୃଭୂମିର ସାହିତ୍ୟର ସମସ୍ୟା ଅନ୍ୟଦେଶ ଓ ଅନ୍ୟଜାତିଠାରୁ ବିଲ୍କୁଲ୍ ଅଲଗା । ତେଣୁ ଏକ ଭାଷାଭାଷୀ ତଥା ଏକକୃଷ୍ଟିବିଶିଷ୍ଟ ଦେଶର ସମାଧାନ ଦ୍ୱାରା ଆମଦେଶର ସମସ୍ୟା ସମାହିତ ହୋଇ ନପାରେ । ବହୁ ଭାଷାଭାଷୀ ଦେଶରେ ବହୁ ସାହିତ୍ୟର ଅବସ୍ଥାନ ଅନିବାର୍ଯ୍ୟ । ଏହି ଭାଷା ଓ ସାହିତ୍ୟ ବାହୁଲ୍ୟ ଦ୍ୱାରା ଆମ୍ଭମାନଙ୍କ ଜାତୀୟତା କେତେଦୂର ଓ କିଭାବେ ପ୍ରଭାବିତ ହେଉଛି ପୁଣି ବହୁ ସାହିତ୍ୟ ପରିବର୍ତ୍ତେ ଏକ ଭାଷା ଓ ଏକ ସାହିତ୍ୟର ପ୍ରବର୍ତ୍ତନ କେତେଦୂର ଓ କିଭାବେ ଆମ୍ଭମାନଙ୍କ ନୂତନ ପ୍ରତିଷ୍ଠିତ ଗଣତନ୍ତ୍ରକୁ ପ୍ରଭାବିତ କରିବ, ଏଗୁଡ଼ିକ ଗୋଟିଏ ଗୋଟିଏ ବର୍ତ୍ତମାନର ସମସ୍ୟା । ଏହି ସମସ୍ୟାଗୁଡ଼ିକ ସ୍ୱାଧୀନତା ଲାଭ ପୂର୍ବେ ନଥିଲା । ବ୍ରିଟିଶ୍ ରାଜତନ୍ତ୍ର ଓ ସଭ୍ୟତାର ଉଜ୍ଜ୍ୱଳତାରେ ଆମ୍ଭମାନଙ୍କର ଚକ୍ଷୁ ଏତେଦୂର ଝଲସି ଯାଇଥିଲା ଯେ ଏହି ସମସ୍ୟାଗୁଡ଼ିକ ଆମ୍ଭମାନଙ୍କ ଚକ୍ଷୁସମ୍ମୁଖରେ ମୋଟେ ପଡ଼ୁ ନଥିଲା । ମାତ୍ର ବର୍ତ୍ତମାନ ଏହି ସମସ୍ୟାଗୁଡ଼ିକ ଆମ୍ଭମାନଙ୍କ ଦ୍ୱାରଦେଶକୁ ପ୍ରଚଣ୍ଡଭାବେ ଆଘାତ କରୁଅଛନ୍ତି । ପୂର୍ବପରି କବାଟ କିଳିଦେଇ ବ୍ରିଟିଶ ବାହୁ ତଳେ ଶୋଇବାର ଆଉ ବେଳ ନାହିଁ । ରାଧାକୃଷ୍ଣନ୍ ତାଙ୍କର ଶିକ୍ଷା ସମ୍ବନ୍ଧୀୟ ବିରାଟ ଯୋଜନାରେ ଦେଖାଇ ଦେଇଛନ୍ତି ଯେ ଆମ୍ଭମାନଙ୍କର ଶିକ୍ଷାକୁ ଆଉ ଅଣ-ଭାରତୀୟ କଲେ ଚଳିବ ନାହିଁ । ସେହିପରି ମଧ୍ୟ ସାହିତ୍ୟ ।

ଭାରତର ଜାତୀୟ ଭାଷା ଗୋଟିଏ କଠିନ ସମସ୍ୟା । ଗାନ୍ଧିଜୀ ଏହା ଜାଣିଥିଲେ ପୁଣି ଏହାର ଏକ ପ୍ରକାର ସମାଧାନର ଇଙ୍ଗିତ ସେ ଦେଇଥିଲେ । ମାତ୍ର ବର୍ତ୍ତମାନ ସେହି ସମସ୍ୟାର ସାକ୍ଷାତ ଓ

ସଠିକ୍ ସମାଧାନ ଆବଶ୍ୟକ । ଏହି ସମାଧାନକୁ ଧରି ଅନ୍ୟ ଭାଷା ଓ ସାହିତ୍ୟର ବିଚାର କରିବା ବର୍ତ୍ତମାନ ପରିସ୍ଥିତିରେ ବୁଦ୍ଧିମତ୍ତାର କାର୍ଯ୍ୟ । ଟିକିଏ ଗମ୍ଭୀର ଚିନ୍ତା କଲେ ଦେଖାଯିବ, ଏହାର ସମାଧାନ ଅତି ସହଜ ନୁହେଁ । ବହୁ ଚିନ୍ତାଶୀଳ, ଡଭଲ ପୂଜ୍ୟ ସମ୍ୟକ୍ ଆଲୋଚନା କରି ରାଧାକୃଷ୍ଣନ୍ ଓ ତାଙ୍କ ସହକର୍ମୀଗଣ କହିଛନ୍ତି ଯେ, ସମଗ୍ର ଭାରତ ପାଇଁ ଗୋଟିଏ ଭାରତୀୟ ଭାଷା ରହିବ ଓ ସେହି ଭାଷା ଭାରତୀୟ ପାର୍ଲିଆମେଣ୍ଟ, ଭାରତୀୟ ସୁପ୍ରିମକୋର୍ଟ, ଭାରତୀୟ ଦୌତ୍ୟ ବିଭାଗ, ପ୍ରାଦେଶିକ ଉଚ୍ଚ କୋର୍ଟରେ ବ୍ୟବହୃତ ହେବ । ଯେଉଁ ଭାଷା ଏହି ଭାରତୀୟ ଭାଷାର ସ୍ଥାନ ନେବ, ଏ ବିଷୟରେ ସେମାନେ ସଂସ୍କୃତ, ଇଂରାଜୀ ଓ ହିନ୍ଦୀ ବିଷୟ ତୁଳନା କରି ହିନ୍ଦୀ ସପକ୍ଷରେ ମତ ଦେଇଛନ୍ତି । ଭାରତୀୟ ସମ୍ବିଧାନର ୩୪୩ (୧) ଧାରାରେ ସ୍ପଷ୍ଟ କୁହାଯାଇଛି, "ସଂଘ କି ରାଜଭାଷା ହିନ୍ଦୀ, ଔର ଲିପି ଦେବନାଗରୀ ହୋଗୀ, ସଂଘ କେ ଶାସକୀୟ ପ୍ରୟୋଜନୋଁ କେ ଲିୟେ ପ୍ରୟୋଗ ହୋନେବାଲେ ଅଙ୍କୋଂ କା ରୂପ ଭାରତୀୟ ଅଙ୍କୋଂ କା ଅନ୍ତର ରାଷ୍ଟ୍ରୀୟ ରୂପ ହୋଗା ।" ଭାରତୀୟ ଭାଷାର ସନ୍ଦର୍ଭରେ ଯେ କୌଣସି ପ୍ରାଦେଶିକ ଭାଷା ଓ ସାହିତ୍ୟର ବିଚାର କଲେହିଁ ପ୍ରତ୍ୟକ୍ଷ ଭାବେ ଆମ୍ଭମାନଙ୍କ ସାହିତ୍ୟ ସମସ୍ୟାର ସମାଧାନ ହୋଇପାରିବ ।

ହିନ୍ଦୀକୁ ଭାରତୀୟ ସଂଘରେ ଇଂରାଜୀର ସ୍ଥାନ ଦିଆଯାଇଛି ବୋଲି କହିବା ଠିକ୍ ହେବନାହିଁ । ଇଂରାଜମାନଙ୍କ ଅମଳରେ ଇଂରାଜୀ ଭାଷା ଭାରତର ପ୍ରତ୍ୟେକ ସ୍ଥାନ ଓ ଅନୁଷ୍ଠାନରେ ମୁଖ୍ୟ ଓ ପ୍ରଥମ ଭାଷା ରୂପେ ଗ୍ରହଣ କରାଯାଇଥିଲା । ତେଣୁ ପ୍ରତ୍ୟେକ ପ୍ରାଦେଶିକ ବା ଆଞ୍ଚଳିକ ଭାଷାର ସ୍ଥାନ ଗୌଣ ଓ ଦ୍ୱିତୀୟ ହୋଇ ରହିଥିଲା । ଇଂରାଜୀ ଭାଷାର ପ୍ରାଧାନ୍ୟ, ସମ୍ମାନ, ମୂଲ୍ୟ ଯେ କୌଣସି

ଆଞ୍ଚଳିକ ଭାଷା ଅପେକ୍ଷା ତେର ଉଚ୍ଚରେ ଥିଲା । ମାତ୍ର ସମ୍ବିଧାନରେ ହିନ୍ଦୀ ଭାଷାକୁ କିମ୍ବା ଦେବନାଗରୀ ଲିପିକୁ ସେତେ ଉଚ୍ଚ ସ୍ଥାନ ଦିଆଯାଇନାହିଁ । ଆଞ୍ଚଳିକ ଭାଷାକୁ ବରଂ ଉଚ୍ଚତର, ପ୍ରାଧାନତର ଓ ଅଧିକ ମୂଲ୍ୟବାନ୍ ସ୍ଥାନ ଦିଆଯାଇଛି । ସମ୍ବିଧାନର ୩୦୫ ଧାରାରେ ଆଞ୍ଚଳିକ ଭାଷାକୁ ଯେ କୌଣସି ରାଜ୍ୟର ବିଧାନ ମଣ୍ଡଳ ବିଧି ଦ୍ୱାରା ସେହି ରାଜ୍ୟର ରାଜକୀୟ ପ୍ରୟୋଜନ ନିମନ୍ତେ ବ୍ୟବହାର କରାଇ ପାରିବେ । ମାତ୍ର ୩୪୭ ଧାରା ଅନୁସାରେ ଭାରତୀୟ ରାଜଭାଷାହିଁ ବିଭିନ୍ନ ରାଜ୍ୟର ପରସ୍ପର ମାଧ୍ୟମ ରୂପେ ବ୍ୟବହୃତ ହେବ । ରାଧାକୃଷ୍ଣନ କମିସନଙ୍କର ମତ ମଧ୍ୟ ଏହି ସମ୍ବିଧାନର ଅନୁରୂପ । ସେହି ରିପୋର୍ଟର ନବମ ପରିଚ୍ଛେଦର ୩୭ ଅନୁଚ୍ଛେଦରେ ଲେଖାଅଛି, "ଆମେମାନେ ଆଶା କରୁଁ ଯେ ଏହା (ସଙ୍ଘର ରାଜଭାଷା) ଅନ୍ତପ୍ରାଦେଶିକ କାର୍ଯ୍ୟ ନିର୍ବାହ ଓ ଭାରତୀୟ ଅନୁଷ୍ଠାନ ଓ ବାଣିଜ୍ୟ ନିମନ୍ତେ ବ୍ୟବହୃତ ହେବ । କିନ୍ତୁ ସଙ୍ଗେ ସଙ୍ଗେ ସେହି କମିଶନର ସଭ୍ୟମାନେ ଆଞ୍ଚଳିକ ଭାଷାର ସ୍ଥାନ ଗୌଣ କିମ୍ବା ମୂଲ୍ୟ ହ୍ରାସ କରିନାହାନ୍ତି । ବରଂ ବିଶ୍ୱବିଦ୍ୟାଳୟରେ ଉଚ୍ଚ ଶିକ୍ଷାର ମାଧ୍ୟମ ଭାରତ ସଙ୍ଘର ରାଜଭାଷା ହେବା ବିରୁଦ୍ଧରେ ସେମାନେ ମତ ଦେଇଛନ୍ତି । ସେମାନେ ସ୍ପଷ୍ଟ କରି ଦେଇଛନ୍ତି ହିନ୍ଦୀକୁ ସଙ୍ଘର ରାଜଭାଷା ରୂପେ ଗ୍ରହଣ କଲେ ସୁଦ୍ଧା, ଇଂରାଜୀ ଭାଷାକୁ ଯେଉଁ ସ୍ଥାନ ଦିଆଯାଉଥିଲା ସେହି ସ୍ଥାନ ହିନ୍ଦୀକୁ ଦିଆଯିବା ଉଚିତ ନୁହେଁ । ପୁଣି ଉଚ୍ଚ ଶିକ୍ଷା ମଣ୍ଡଳରେ ଅନ୍ୟ ଅଞ୍ଚଳର ଭାଷା ଅପେକ୍ଷା ହିନ୍ଦୀ ସେଠାରେ ସ୍ଥାନ ନେବାକୁ ଅଧିକ ଭାବେ ଯୋଗ୍ୟ ନୁହେଁ । ସେମାନଙ୍କ ମତରେ ଭାରତର ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତିକୁ ଦୁଇଟି ଭାଷା ଶିଖିବାକୁ ଓ ବ୍ୟବହାର କରିବାକୁ ହେବ । ଭାରତୀୟ ସଙ୍ଘର ରାଜଭାଷା ଓ ନିଜେ ବାସ କରୁଥିବା ଅଞ୍ଚଳର ଆଞ୍ଚଳିକ

ଭାଷା । ଭାରତୀୟ କାରବାରରେ ପୁଣି ଅନ୍ତର୍ପ୍ରାଦେଶିକ କାରବାରରେ ହିନ୍ଦୀର ସ୍ଥାନ ଯାହା ହେବ ପ୍ରାଦେଶିକ ବା ଅଞ୍ଚଳର କାରବାରରେ ଅଞ୍ଚଳର ଭାଷାର ସ୍ଥାନ ଠିକ୍ ତାହା ହେବ । କେହି କାହାର ଅଧିକାର, ବ୍ୟବହାର ଓ ଗୌରବରେ ହସ୍ତକ୍ଷେପ କରିବେ ନାହିଁ । ଏହି ସମାଧାନ ଦ୍ୱାରା ସ୍ୱାଧୀନ ଭାରତର ଜାତୀୟ ଏକତା ସଙ୍ଗେ ସଙ୍ଗେ ସମ୍ବିଧାନଗୃହୀତ ଗଣତନ୍ତ୍ର ଶାସନ ଓ ଅଞ୍ଚଳର ଅଧିବାସୀଙ୍କର ରାଜ୍ୟ ଓ ସଙ୍ଘ ସଙ୍ଗେ ସହଯୋଗ ଅତି ସ୍ୱାଭାବିକ ଭାବେ ହୋଇ ପାରିବ । ସେମାନେ ତେଣୁ ପରାମର୍ଶ ଦେଇଛନ୍ତି ଯେ ପ୍ରତ୍ୟେକ ଅଞ୍ଚଳର ବିଶ୍ୱବିଦ୍ୟାଳୟରେ ଅଞ୍ଚଳର ଭାଷାହିଁ ମାଧ୍ୟମ ହେବା ଆବଶ୍ୟକ ।

ରାଧାକୃଷ୍ଣନ କମିଶନ ଶିକ୍ଷାର ମାଧ୍ୟମ, ଭାଷାର ବିଚାର ସଙ୍ଗେ ସଙ୍ଗେ ଲିପିର ମଧ୍ୟ ବିଚାର କରି ସେମାନଙ୍କର ସ୍ପଷ୍ଟ ଅଭିମତ ପ୍ରଦାନ କରିଅଛନ୍ତି । ସେମାନେ କହନ୍ତି ଯେ ଭାରତୀୟ ସଙ୍ଘର ଭାଷାର ଲିପି ହେବ ଦେବନାଗରୀ ଓ ଅଞ୍ଚଳର ଭାଷାର ଲିପି ହେବ ସେହି ଭାଷାବ୍ୟବହୃତ ଲିପି । ଉର୍ଦ୍ଦୁ ଲିପିକୁ ମଧ୍ୟ ସେମାନେ ଦେବନାଗରୀ ବ୍ୟତୀତ ଦ୍ୱିତୀୟ ଭାରତୀୟ ଲିପି ରୂପେ ବ୍ୟବହାର କରିବାକୁ ସୁପାରିସ କରିଅଛନ୍ତି । ସମ୍ବିଧାନ ଏହି ଲିପି ସମ୍ବନ୍ଧେ ନୀରବ । ଅର୍ଥାତ୍ ଅଞ୍ଚଳର ଲିପି ବ୍ୟବହାରର ସପକ୍ଷରେ ମଧ୍ୟ ସମ୍ବିଧାନରେ ମତ । ମାତ୍ର ହିନ୍ଦୀ ଭାଷାକୁ ଅଞ୍ଚଳର ଭାଷା ବିରୁଦ୍ଧରେ ଠିଆ କରାଇବା ଯେପରି କଷ୍ଟସାଧ୍ୟ, ଦେବନାଗରୀ ଲିପିକୁ ଅଖିଳ ଭାରତୀୟ ଲିପିକରି, ଅନ୍ୟ ଅଞ୍ଚଳର ଲିପିଗୁଡ଼ିକୁ ଲୁପ୍ତ କରିଦେବା ସେପରି କଷ୍ଟସାଧ୍ୟ ନୁହେଁ । ପୁଣି ଅଖିଳ ଭାରତୀୟ ଗୋଟିଏ ଲିପିର ବ୍ୟବହାର ଦ୍ୱାରା ତାହାର ପ୍ରାରମ୍ଭିକ ପ୍ରତିବନ୍ଧକ ଓ କଷ୍ଟ ତୁଳନାରେ

ଅନ୍ୟ ଭାଷାର ଉପକାର ଢେର ବେଶୀ । ଅଷ୍ଟମର କଥା, ଅନ୍ୟ ଦେଶର ଭାଷାତତ୍ତ୍ୱବିତ୍ ପଣ୍ଡିତମାନେ ରୋମାନ ଲିପି କିମ୍ବା ନାଗରୀ ଲିପିର ବ୍ୟବହାର ସମ୍ବନ୍ଧେ ବାଦାନୁବାଦ କରି ସମଗ୍ର ଭାରତରେ ଏକଲିପି ବ୍ୟବହାରର ଆବଶ୍ୟକତା ଓ ଉପାଦେୟତା ଭୁଲି ଯାଉଛନ୍ତି । ଗାନ୍ଧୀଙ୍କର ଉର୍ଦ୍ଦୁ ଲିପିର ସପକ୍ଷତା ୩୪୩ ସମ୍ବିଧାନ ବଳରେ ଉପେକ୍ଷାପାଇଛି । ପ୍ରକୃତରେ ଉର୍ଦ୍ଦୁ ଲିପିର ବ୍ୟବହାର ସମ୍ବିଧାନରେ ଥିଲେ, ସମଗ୍ର ଭାରତରେ ଏକଲିପି କରହେବ ନାହିଁ । କାରଣ ଉର୍ଦ୍ଦୁରେ ଙ, ଞ, ଢ, ଖ, ପ୍ରଭୃତି ଅକ୍ଷର ନାଗରୀରେ ଥିଲା ପରି ନାହିଁ । ମାତ୍ର ଅଳ୍ପମାତ୍ର ଭ୍ରମାତ୍ମକ ଦେଖିଯାଏ, ସେହି ଏକପ୍ରକାର ଅକ୍ଷରମାଳା । ସେହି ଏକପ୍ରକାର ସ୍ୱର ବ୍ୟଞ୍ଜନ ବିଭାଗ । ସେହି ଏକପ୍ରକାର ସ୍ୱର ବ୍ୟଞ୍ଜନ ମିଶ୍ରଣର ଅକ୍ଷର ରୂପ ଓ ଉଚ୍ଚାରଣ 'କ' କୁ 'ଅ' କାର ଦେଲେ ଅଯୋଧ୍ୟାରେ ଓ କାଶ୍ମୀରରେ ଏକାପରି 'କା' ହେଉଛି । 'ସୂର୍ଯ୍ୟ' ଓ 'ଉଦୟ' ଏହି ଦୁଇଟି ଶବ୍ଦକୁ ମିଶାଇଲେ ଏକାପରି ହେଉଛି ଓ ଉଭୟଙ୍କରେ ଅ + ଉ = ଓ ସୂତ୍ର ଅନୁଯାୟୀ 'ସୂର୍ଯ୍ୟୋଦୟ' ଶବ୍ଦ ଉତ୍ପନ୍ନ ହୁଏ । ଲିପିର ପ୍ରତିବନ୍ଧ, ଲିପିର ବୈଷମ୍ୟ, ଲିପିର ବହୁଳତା ଓ ଲିପିର କ୍ଷଣଶୀଳତା, ସ୍ୱାଧୀନ ଭାରତରେ ଅକ୍ଷମଣୀୟ ଭାବେ ବରଦାସ୍ତ କରାଯାଉଛି । ଏହା ଅତଏବ ଅସ୍ୱାଭାବିକ ପୁଣି ଅକାରଣରେ ଭାରତୀୟ ଏକତାର ପରିପନ୍ଥୀ । ତେଣୁ ଯଥାଶୀଘ୍ର ଏହି ଲିପିଏକତା ଆଣିବା ସକାଶେ ପ୍ରତ୍ୟେକ ରାଜ୍ୟ ସରକାର ଓ କେନ୍ଦ୍ର ସରକାରର ଗୋଟିଏ ପ୍ରତ୍ୟକ୍ଷ ଯୋଜନା କରିବା ନିତାନ୍ତ ଆବଶ୍ୟକ ।

ଉଲ୍ଲିଖିତ ଏହି ସବୁ ଯୁକ୍ତିର ତାତ୍ପର୍ଯ୍ୟ ଏହି ଯେ ଓଡ଼ିଶା ରାଜ୍ୟରେ ଓଡ଼ିଆ ଭାଷା ମୁଖ୍ୟ ଭାଷା ରୂପେ ରହିବ ପୁଣି ଭାରତୀୟ

ହିସାବରେ ଓଡ଼ିଆମାନଙ୍କୁ ହିନ୍ଦୀ ଭାଷା ମଧ୍ୟ ଶିଖିବାକୁ ହେବ। ପୁଣି ଯଥାଶୀଘ୍ର ଆଞ୍ଚଳିକ ଭାଷାଗୁଡ଼ିକର ଲିପି ନାଗରୀ ଲିପି କରାଗଲେ ଓଡ଼ିଆ ଭାଷାର ଲିପି ମଧ୍ୟ ନାଗରୀ ଲିପି କରାଯିବ। ବିଶ୍ୱବିଦ୍ୟାଳୟର ଉଚ୍ଚ ଶିକ୍ଷା କ୍ଷେତ୍ରରେ ଇଂରାଜୀର ସ୍ଥାନ ଅଧିକାର କରିବାକୁ ଆମ୍ଭମାନଙ୍କର ଓଡ଼ିଆ ଭାଷା ଓ ଓଡ଼ିଆ ସାହିତ୍ୟ ସକ୍ଷମ କି ନୁହେଁ ବିଚାରିବାର କଥା। ଏହା ଆମ ସାହିତ୍ୟର ବର୍ତ୍ତମାନ ପ୍ରଧାନ ସମସ୍ୟା। ଇଂରାଜୀ ସଙ୍ଗେ ଆମ୍ଭମାନଙ୍କର ଭାଷା ଯେ ସମକକ୍ଷ ନୁହେଁ ଏଥିରେ ମତାନ୍ତର ନାହିଁ। ଏଥିପାଇଁ ଦେଶବାସୀ, ଆମେମାନେ ଓ ଆମର ପୂର୍ବ ସରକାର କେହିହେଲେ ଦାୟୀ ସେ ସମ୍ବନ୍ଧେ ବିଚାର କରି କିଛି ଲାଭ ନାହିଁ। ଶିକ୍ଷାପାଇଁ କେବଳ ଯେ ସାହିତ୍ୟ ଆବଶ୍ୟକ ଏହା କହିବା ଠିକ୍ ନୁହେଁ। ସାହିତ୍ୟର ପରିସର ଆହୁରି ଅଧିକ, ଢେର ଅଧିକ। ଆମର ସାହିତ୍ୟକୁ ଏହି ଉଚ୍ଚ ସ୍ଥାନରେ ରଖିବାକୁ ହେଲେ, ଆମ୍ଭମାନଙ୍କୁ ବହୁ ପରିଶ୍ରମ କରିବାକୁ, ବହୁ ଧନ ବ୍ୟୟ କରିବାକୁ, ବହୁ ସ୍ୱାର୍ଥ ତ୍ୟାଗ କରିବାକୁ ହେବ; ପୁଣି ସାହିତ୍ୟର ବିକାଶରେ ଭାଗୀ ହେବା ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତିର ଧର୍ମ ଓ କର୍ତ୍ତବ୍ୟ ବୋଲି ଅବଧାରଣା କରିବାକୁ ହେବ। ସମ୍ବିଧାନର ଅଷ୍ଟମ ଅନୁସୂଚୀର ଚଉଦଟି ଭାଷାର ଉନ୍ନତି କରିବା ସହଜସାଧ୍ୟ କାର୍ଯ୍ୟ ନୁହେଁ। ଭାଷାବାହୁଲ୍ୟ ହେତୁ ଆମ୍ଭମାନଙ୍କର ବହୁତ ଧନ ଓ ଶକ୍ତି ବ୍ୟୟିତ ହେବ, ଯାହା କି ସମଗ୍ର ଭାରତର ଗୋଟିଏ ଭାଷା ହୋଇ ପାରିଥିଲେ ସଞ୍ଚିତ ହୋଇ ରହିଥାନ୍ତା। ମାତ୍ର ଗଣତନ୍ତ୍ରର ବିକାଶ ପାଇଁ, ଆଞ୍ଚଳିକ ଜାତିର ସମ୍ମାନ ରକ୍ଷା ପାଇଁ ଓ ପ୍ରାଚୀନ ପରମ୍ପରାର ରକ୍ଷଣ ପାଇଁ ଆମ୍ଭେମାନେ ଏହି ଶକ୍ତି କ୍ଷୟ ଓ ଧନବ୍ୟୟ ବରଣ କରିସାରିଛୁ। ଏ ସମ୍ବନ୍ଧେ ଅଧିକ ଆଲୋଚନା କରିବା ବୃଥା ବାକ୍ୟ ବ୍ୟୟ ମାତ୍ର। କେବଳ ଧନ ଓ ଶକ୍ତିର ବିନିଯୋଗରେ ଆମ୍ଭମାନଙ୍କୁ

ଓଡ଼ିଆ ଭାଷାକୁ ପୁଷ୍ଟ ଓ ଓଡ଼ିଆ ସାହିତ୍ୟକୁ ଉନ୍ନତ କରିବାକୁ ହେବ । ସାହିତ୍ୟ ଦୁଇପ୍ରକାର । ଯେ କୌଣସି ଭାବେ ଅକ୍ଷରରେ ପ୍ରକାଶ ହେଲା ମାତ୍ରେ ତାହାକୁ ସାହିତ୍ୟ କୁହାଯାଇପାରେ । ଏହି ଅର୍ଥରେ ଇଂରାଜୀପଦ literatureକୁ ବ୍ୟବହାର କରାଯାଉଛି । ବଣିକମାନେ ସେମାନଙ୍କର ଜିନିଷ ବିକିବା ପାଇଁ ଯେଉଁସବୁ ବିଜ୍ଞାପନ ପ୍ରକାଶ କରି ପ୍ରଚାର କରନ୍ତି ତାହା ମଧ୍ୟ ସାହିତ୍ୟ । ଆଜିକାଲି ଏହି ସାହିତ୍ୟର ମଧ୍ୟ ଶୈଳୀ, ରୂପ ଓ ସୌନ୍ଦର୍ଯ୍ୟ ଉତ୍ତରୋତ୍ତର ବୃଦ୍ଧି ଲାଭ କରୁଅଛି । ସେହିପରି ବିଭିନ୍ନ ଶାସ୍ତ୍ରର ପ୍ରକାଶ ପାଇଁ ସାହିତ୍ୟ ଆବଶ୍ୟକ । କିଏ କହିପାରେ କେବଳ ଭାଷା ହେଲେ ଯଥେଷ୍ଟ । ମାତ୍ର ଶାସ୍ତ୍ର ଲିଖନରେ ମଧ୍ୟ ଶୈଳୀ ଅଛି । ଅର୍ଥନୀତି ଲେଖକ ବା ଦର୍ଶନ ଲେଖକ ସମସ୍ତେ ସେହି ଗୋଟିଏ ଭାଷା—ବାହନ ବ୍ୟବହାର କରନ୍ତି । ମାତ୍ର ବିଭିନ୍ନ ଲେଖକଙ୍କର ପ୍ରକାଶ ଭଙ୍ଗୀ ବିଭିନ୍ନ ପ୍ରକାରର । ଓଡ଼ିଆ ଭାଷାରେ ପ୍ରକାଶିତ ହେବା ଶାସ୍ତ୍ର ସଂଖ୍ୟା ଅତି କମ୍, ଆଙ୍ଗୁଠିରେ ଗଣିହେବ । ମହତାବଙ୍କ ଓଡ଼ିଶା ଇତିହାସ, କୃପାସିନ୍ଧୁ ମିଶ୍ରଙ୍କ କୋଣାର୍କ ପଢ଼ିବା ପରେ ଓଡ଼ିଶା ଇତିହାସର ଅନ୍ୟ ପ୍ରାମାଣ୍ୟ ଗ୍ରନ୍ଥ ଦେଖିବା ପାଇଁ ଆମ୍ଭମାନଙ୍କୁ ଯିବାକୁ ହୁଏ, ପାଠାଗାରର ଇଂରାଜୀ ଶାଖାକୁ । ଦୃଷ୍ଟାନ୍ତ ଦେବା ଅନାବଶ୍ୟକ । ଏହି ଦିଗରେ ଓଡ଼ିଆ ସାହିତ୍ୟର ଦୈନ୍ୟ ସ୍ୱୀକାର କରିବା ଛଡ଼ା ଗତ୍ୟନ୍ତର ନାହିଁ । ନୀଳକଣ୍ଠଦାସ ତାଙ୍କ ଗୀତା ଲେଖି ଚୁପ୍ ରହିଲେ । ବହୁ ସୂତ୍ର ଓ ଉପନିଷଦର ଟୀକା ଓ ଗ୍ରନ୍ଥପ୍ରବେଶ ଲେଖିବା ତାଙ୍କର ଏକାନ୍ତ କର୍ତ୍ତବ୍ୟ । ବିଜ୍ଞାନ ଇତିହାସ, ଭାଷାତତ୍ତ୍ୱ, ଚିକିତ୍ସା ଓ ସ୍ୱାସ୍ଥ୍ୟତତ୍ତ୍ୱ ସମ୍ବନ୍ଧୀୟ ବହି ଆମ ଭାଷାରେ ନାହିଁ । ଗୋପାଳଚନ୍ଦ୍ର ପ୍ରହରାଜଙ୍କ ସାରା ଜୀବନ ଖଟି ଯେଉଁ ଭାଷାକୋଷ ପ୍ରଣୟନ କଲେ ତାହା ମଧ୍ୟ ଓଡ଼ିଆ ସାହିତ୍ୟର ବିରାଟ କଳ୍ପନା ଓ ଯୋଜନା ସମ୍ମୁଖରେ ଯଥେଷ୍ଟ ନୁହେଁ । ଓଡ଼ିଆ ଶବ୍ଦ ଭଣ୍ଡାରର ଅଭିବୃଦ୍ଧି,

ଓଡ଼ିଆ ଭାଷାରେ ବିଭିନ୍ନ ଶାସ୍ତ୍ରର ପ୍ରକାଶ ପୁଣି ଓଡ଼ିଆ ଭାଷା ତଥା ସାହିତ୍ୟର ସର୍ବାଙ୍ଗୀନ ଉନ୍ନତି ଜଣେ ଦୁଇଜଣର ବ୍ୟକ୍ତିଗତ ଚେଷ୍ଟା ଦ୍ୱାରା ହେବା ଅସମ୍ଭବ । ସେଥିପାଇଁ ଆବଶ୍ୟକ ସଙ୍ଘବଦ୍ଧ ଚେଷ୍ଟା ଓ ସରକାରୀ ଯୋଜନା । ଭାରତ ସରକାରଙ୍କ 'ଛ' ବର୍ଷିଆ ଯୋଜନା ପରି ସାହିତ୍ୟ ଯୋଜନା ଆବଶ୍ୟକ । ଏହି ଯୋଜନାକୁ ରାଜ୍ୟ ଓ ସଂଘ ସରକାର ଅତିଶୀଘ୍ର ମନ ଧ୍ୟାନ ଦେବା ଆବଶ୍ୟକ । ଯୁଦ୍ଧବେଳେ, ଯୁଦ୍ଧ ପୂର୍ବରୁ ମଧ୍ୟ କେତେ ଦେଶରେ ବାଧ୍ୟତାମୂଳକ ସାମରିକ ଶିକ୍ଷା ଦିଆଯାଇ ପ୍ରତ୍ୟେକ ନାଗରିକଙ୍କୁ ଦେଶ ରକ୍ଷାରେ ଯୋଗ ଦେବା ପାଇଁ ବାଧ୍ୟ କରାଯାଏ । ଏହି ସାମରିକ ବାଧ୍ୟତାର ଅନୁକରଣରେ ଆମ୍ଭମାନଙ୍କ ସରକାର ସେହିପରି ପ୍ରତ୍ୟେକ ଅଧ୍ୟାପକଙ୍କୁ ଓଡ଼ିଆ ସାହିତ୍ୟ ପାଇଁ କେତୋଟି ସୁଲିଖିତ ବହି ଦାନ କରିବାକୁ ବାଧ୍ୟ କରିବା ଉଚିତ । ଏପରି କିଛି ଗୋଟିଏ ବାଧ୍ୟତାମୂଳକ ଯୋଜନା ନ ହେଲେ ଆମ୍ଭମାନଙ୍କ ସାହିତ୍ୟର ଦୈନ୍ୟ ଓ ଅଧୋଗତି ଘୁଞ୍ଚି ନ ପାରେ ।

ଅନ୍ୟ ଏକ ପ୍ରକାର ସାହିତ୍ୟ ଅଛି ଯହିଁର ସମ୍ବନ୍ଧ କେବଳ ରସ ପ୍ରକାଶ ଓ ପରିବେଷଣରେ । ବୋଧହୁଏ ସାହିତ୍ୟ କହିଲେ ଅନେକ ବ୍ୟକ୍ତି ଏହାହିଁ ବୁଝନ୍ତି । ସେମାନଙ୍କ ମତରେ କାଳିଦାସଙ୍କ କୁମାର ସମ୍ଭବ କିମ୍ବା ଭବଭୂତିଙ୍କ ଉତ୍ତର ରାମ ଚରିତ ସାହିତ୍ୟ ପଦ ବାଚ୍ୟ, କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର କିମ୍ବା କପିଳଙ୍କ ସାଂଖ୍ୟକୁ ସାହିତ୍ୟ କୁହାଯିବ ନାହିଁ । ଏହି ରସ ସମ୍ବଳିତ ସାହିତ୍ୟ ଜଗତରେ ଆମ ଓଡ଼ିଆ ସାହିତ୍ୟର ସ୍ଥାନ, ଗତି ଓ ତାହାର ଉନ୍ନତି ନେଇ ବିଚାର କରିବା ପ୍ରତ୍ୟେକ ସାହିତ୍ୟିକର କର୍ତ୍ତବ୍ୟ । ପୁରାତନ ଯୁଗକୁ ସ୍ୱର୍ଣ୍ଣଯୁଗ ବୋଲି ନାମଦେବା, ଅଗାମୀ ଯୁଗକୁ ଗୋଲାପୀ ଆଶାପ୍ରଦ

ବଂଶୀର ଭଳି ଆଶାପ୍ରିୟ ଲୋକ ସୃଷ୍ଟି କରିବା ଓ ଜାତିମାନଙ୍କୁ ସମସ୍ୟାବହୁଳ ଭବ ଅନ୍ଧକାରଗ୍ରସ୍ତରୁ କରିବା ମାନବ ଜାତିର ଗୋଟିଏ ଚିରନ୍ତନ ଅଭ୍ୟାସ । ଆମ୍ଭେମାନେ ତେଣୁ ଓଡ଼ିଆ ସାହିତ୍ୟର ବର୍ତ୍ତମାନ ଅବସ୍ଥାନକୁ ଅବଶ୍ୟ ନିନ୍ଦା କରି, ପୂର୍ବକାଳୀନ ସାହିତ୍ୟର ଅମିତ ପ୍ରଶଂସା କଲେ ସେହି ଭୁଲରେ ପଡ଼ିବା । ଆଧୁନିକ ଉପନ୍ୟାସଗୁଡ଼ିକ ଫକୀର ମୋହନଙ୍କ ଉପନ୍ୟାସ ପରି ଉଚ୍ଚକୋଟିର ନୁହେଁ, ଭକ୍ତ କବି ମଧୁସୂଦନଙ୍କର ଗୀତ ଭଳିଆ ଗୀତ ଏବର କବିମାନେ ମୋଟେ ଲେଖିପାରୁ ନାହାନ୍ତି ; ଆଧୁନିକ କାବ୍ୟ, କବିତା, ଉପନ୍ୟାସ ଗଳ୍ପରେ ବହୁ ଉଦ୍‌ଭ୍ରାନ୍ତ ପ୍ରେମର ଲକ୍ଷଣ ଦେଖାଯାଏ, ଗଣ ସାହିତ୍ୟ ନାମରେ ଓଡ଼ିଆ ଭାଷାକୁ ଏକାବେଳେକେ ଶ୍ରୀ ଶୂନ୍ୟ ବସ୍ତୁଖେଳା କରାଯାଇଛି; ଗ୍ଲାନି ଚଉପଦୀର ଯୁଗକୁ ଯାଇ ଗୋପାଳକୃଷ୍ଣଙ୍କ ପରି କୃଷ୍ଣ ପ୍ରେମର ଗୀତ ନ ଗାଇଲେ ଆମ ସାହିତ୍ୟର ଉନ୍ନତି ସୁଦୂରପରାହତ । ଏହିପରି ଆଧୁନିକ ଓଡ଼ିଆ ଲେଖକ ଓ ଲେଖା ସମ୍ବନ୍ଧ ବହୁତ କୁତ୍ସାରଟନା ଲିଖିତ ଭାବେ ହେଉ ବା ନ ହେଉ, ମୌଖିକ ଭାବେ ହେଉଛି । ଏପରି କୁତ୍ସାରଟନାକାରୀଙ୍କର ଭାଙ୍ଗିବା ପ୍ରବୃତ୍ତିକୁ ଆମ ସାହିତ୍ୟରେ କେବଳ ଯେ ସ୍ଥାନ ଦିଆ ନଯିବ ଏପରି ନୁହେଁ, ସେମାନଙ୍କ ପାଇଁ ସାହିତ୍ୟ ଦିଗରୁ ଏକ ପ୍ରକାର ବହିଷ୍କାର ପନ୍ଥା ଅବଲମ୍ବନ କରିବା ଶ୍ରେୟସ୍କର । ଭାଷା ଓ ସାହିତ୍ୟର ଗତି ଜୀବନ୍ତ ସମାଜର କ୍ରମବିକାଶ ସଙ୍ଗେ ସଂଶ୍ଳିଷ୍ଟ । ତେଣୁ ଭଞ୍ଜ ସାହିତ୍ୟ, ଜଗନ୍ନାଥ ସାହିତ୍ୟ ଓ ମାର୍କଣ୍ଡ ଦାସଙ୍କ ସାହିତ୍ୟ ଆମ ଭାଷାର ଅମୂଲ୍ୟ ସଂପଦ ବୋଲି ଏହିଯୁଗରେ ଭଞ୍ଜଙ୍କ ପରି ଲାବଣ୍ୟବତୀ କାବ୍ୟ ଲେଖିବାରେ ଯେଉଁ ଲେଖକ ରତ ହେବେ ତାଙ୍କୁ କୌଣସି ଯାଦୁଘରେ ରଖିବା ବନ୍ଦୋବସ୍ତ କରିବା ଆବଶ୍ୟକ । ଉପେନ୍ଦ୍ର ଭଞ୍ଜଙ୍କ ଯାବତୀୟ କୃତି ସେ କାଳର

ସାମନ୍ତ ବାଦ, ସେ ସମୟର ଅର୍ଥନୀତି ଅଜଣାନାହିଁ । ରଜା ପ୍ରଜା ଓ ରଜା ପ୍ରଜାର ବିରୋଧ ଓ ମିଳନରେ ଏବେ କେହି ଆକୃଷ୍ଟ ନୁହେଁ । ଶ୍ରୀଜଗନ୍ନାଥ ପରି ଚଳଣି ମଧ୍ୟ ଆଜିର ସାହିତ୍ୟିକ ପ୍ରତିଦ୍ୱନ୍ଦ୍ୱିତାରେ ମୁଣ୍ଡଟେକି ରହିବାକୁ କଷ୍ଟ ବୋଧ କରୁଛି । ପୁରାତନ ସାହିତ୍ୟର ଆଦର୍ଶ ଦେଖାଇ ପୁରାତନ ସମାଜର ଗତି ବିଧି ଅନୁକରଣ କରି ଆମ୍ଭମାନଙ୍କର ସାହିତ୍ୟ ଚଳି ନପାରେ । ଯେ କୌଣସି ସମାଜର ପ୍ରତିବିମ୍ବ ସାହିତ୍ୟରେ ପଡ଼େ । ତେଣୁ ବିଂଶ ଶତାବ୍ଦୀର ମଧ୍ୟଭାଗରେ ଗଢ଼ି ଉଠୁଥିବା ଓଡ଼ିଆ ସାହିତ୍ୟକୁ ପୁରାତନ ହାବଭାବ, ବେଶଭୂଷା ଓ ଭାବରେ ସଜାଇବା ଠିକ୍ ହେବନାହିଁ । କେବଳ ଦର୍ପଣ ହେଲେ ମଧ୍ୟ ସାହିତ୍ୟର ସବୁ ହେଲା ବୋଲି କୁହାଯାଇ ପାରିବ ନାହିଁ । ଦର୍ପଣର ପ୍ରତିବିମ୍ବ ତ ଆମକୁ କିଛି ନୂଆ ବିଷୟ ଦେବ ନାହିଁ । ସାହିତ୍ୟରୁ ମଧ୍ୟ ଆମ୍ଭମାନଙ୍କୁ କେତେ ବିଷୟ, କେତେ ଭାବ, କେତେ ନୀତି ଶିଖିବାକୁ ହେବ । ମାତ୍ର ଏହି ନୀତିଶିକ୍ଷାକୁ, ଏହି ଭାବପ୍ରକାଶକୁ, ଏହି ବିଷୟର ଅବତାରଣାକୁ ସାହିତ୍ୟ ରସପୂର୍ଣ୍ଣ କରି ସୁନ୍ଦର ରୂପ ଦେଇ ଆମ୍ଭମାନଙ୍କ ସମ୍ମୁଖରେ ଥୋଇଦିଏ । ଆମ୍ଭେମାନେ ତେଣୁ ରସସ୍ରୋତରେ ଏକ ପ୍ରକାର ଭାସିଯାଉଁ, ସାମୟିକ ଭାବେ ଆତ୍ମହରା ହୋଇଯାଉଁ ଏବଂ ଅତି ଗୋପନ ଭାବରେ, ଅତି ଅଜଣା ଭାବେ, ଆମ୍ଭମାନଙ୍କ ଚରିତ୍ରର ଉନ୍ନତି ଆପେ ଆପେ ହୋଇଯାଏ । ଆମ୍ଭମାନଙ୍କର ଆଧୁନିକ ଓଡ଼ିଆ ସାହିତ୍ୟ ଏହିସବୁ ରୀତି ଓ ନିୟମ କେତେଦୂର ରକ୍ଷା କରୁଛି, ଏବଂ ଦେଶରେ ଭାରତର ଅନ୍ୟାନ୍ୟ ଆଞ୍ଚଳିକ ସାହିତ୍ୟ ସଙ୍ଗେ କେତେଦୂର ତାଳ ମିଶାଇ ଚାଲିପାରୁଛି, ଏହି ସବୁର ବିଚାର ଉପରେ ଆମ୍ଭମାନଙ୍କର ସାହିତ୍ୟର ଉତ୍କର୍ଷ କିମ୍ବା ଅପକର୍ଷ ନିର୍ଭର କରେ ।

ପରିସ୍ଥିତିର ବାଧ୍ୟତା ହେତୁ ଓଡ଼ିଆ ସାହିତ୍ୟ କର୍ଣ୍ଣଧାରଙ୍କ ପରେ ତାହାର ସ୍ୱାଭାବିକ ଓ ନିଜ ବୈଶିଷ୍ଟ୍ୟ ଧାରା ଛାଡ଼ି ଦେବାକୁ ବାଧ୍ୟ ହୋଇଥିଲା । ଠିକ୍ ଇଂଲଣ୍ଡର ଶିଳ୍ପ ବିପ୍ଳବ ଫଳରେ ଭାରତ ତାହାର ବୟନ ଶିଳ୍ପର ହସ୍ତ କୌଶଳକୁ ଜଳାଞ୍ଜଳି ଦେଲାପରି । ରାଧାନାଥ ଯେଉଁସବୁ କାବ୍ୟ ଲେଖିଲେ, ପ୍ରାୟ ସବୁ କାବ୍ୟ ଇଂରାଜୀ ସାହିତ୍ୟର କଥାବସ୍ତୁ, ନାୟକ ନାୟିକା ଓ ଘଟଣା ରାଶିରେ ପୂର୍ଣ୍ଣ କରିଥିଲେ । ସେ କରିବେ କ'ଣ ? ଭାରତର ଯେ କୌଣସି ଅଞ୍ଚଳର ସାହିତ୍ୟ ଦେଖ, ସବୁ ଏହି ଧରଣର । ପାର୍ଥକ୍ୟ ଏତିକି, କିଏ ଆଗ, କିଏ ପଛ । ଗାନ୍ଧିଜୀ କହିଲେ ପରି ଇଂରାଜ ଶାସନର ଅର୍ଥଶୋଷଣ ଅପେକ୍ଷା ସଂସ୍କୃତିର ଲୋପ ସାଧନ ବେଶୀ ଅତିଶୟ ମାରାତ୍ମକ । ଭାରତରେ ବିଂଶ ଶତାବ୍ଦୀର ଆଧୁନିକ ଭାବ ଧାରା ଯୁଗର ଲକ୍ଷଣ, ଇଂରାଜ ଶାସକମାନେ ନିମିତ୍ତମାତ୍ର । ମାତ୍ର ଏହି ଲକ୍ଷ୍ୟକୁ ଅବାଧ ଗତି କରିବା ପାଇଁ ସୁବିଧା ଦେଇ ନଥିବାରୁ ଆମର ଶାସନ ପରି ଆମର ସାହିତ୍ୟ ମଧ୍ୟ ନିକୃଷ୍ଟ, ଅନୁକରଣ ବାହୁଲ୍ୟ, ମୌଳିକତା ହୀନ ଓ ଅସ୍ୱାଭାବିକ ହେବା ଉପରେ ଥିଲା । ମାତ୍ର ଗାନ୍ଧି ଯୁଗରେ ଭାରତର ତଥା ଓଡ଼ିଶାର ଆଖି ଫିଟିଲା ଓ ସେହି ଅନୁସାରେ ଓଡ଼ିଆ ସାହିତ୍ୟର ଦାସ ମନୋଭାବ ଲୁପ୍ତ ହେଲା । ମହାରାଣୀ ଭିକ୍ଟୋରିଆଙ୍କ ସ୍ତବ ଗାନରେ ଆମ ସାହିତ୍ୟିକମାନଙ୍କର ଖାଲି କଲମ ଆଉ ଲାଗିଲା ନାହିଁ, ଇଂରାଜ ରାଜତ୍ୱ ବିଧି ନିର୍ଦ୍ଦେଶ ବୋଲି ଆଉ ସାହିତ୍ୟ ରାଜ୍ୟର ଆଦର୍ଶ ହେଲା ନାହିଁ, ଭୀରୁତାଶୂନ୍ୟ ଉତ୍ସାହରେ ଶାସକମାନଙ୍କ କ୍ରୂର କରଣୀ 'ମୁକ୍ତା ଗଡ଼ର କ୍ଷୁଧାରେ' ଓ 'ଧା ଅନଟନ' ପ୍ରକାଶ ପାଇଲା । ପାନିକ୍କରର The Indian Revolution ନାମକ ବହିର ପ୍ରଥମ ଭେଟ ପୃଷ୍ଠାରେ ସେ ଦେଖାଇ ଦେଇଛନ୍ତି କିପରି ହଟେଣ୍ଟ କୁ ଉରସରେ ହଟେଣ୍ଟୋଟର

ଭାବ ମୂଳଭିତ୍ତିର ଛାଞ୍ଚ ଧରିଥିଲା । ଓଡ଼ିଆ ସାହିତ୍ୟର ଉପନ୍ୟାସ, ଗୀତ ଓ ପ୍ରବନ୍ଧରେ ଏହି ପ୍ରଭାବର ପ୍ରତିବିମ୍ବ ପଡ଼ିବାକୁ ଲାଗିଲା ।

ଆଧୁନିକଯୁଗ ଗଦ୍ୟର ଯୁଗ, ପଦ୍ୟର ନୁହେଁ । ପଦ୍ୟକୁ ଯୁକ୍ତି ନାମରେ ଭୂଷିତ ନକରି କେତେକ କେତେ ପଦ୍ୟ ଗଦ୍ୟ ଆକାରରେ ମଧ୍ୟ ଆଜି ଲେଖା ଯାଉଛି । ଉପନ୍ୟାସ, ଗଳ୍ପ ଓ ପ୍ରବନ୍ଧର ସଂଖ୍ୟା ପଦ୍ୟ, ଗୀତ ଓ କାବ୍ୟ ଅପେକ୍ଷା ବହୁ ଗୁଣରେ ଅଧିକ ହେବାରେ ଲାଗିଛି । ଚଳଚ୍ଚିତ୍ରର ବିକାଶ ହେତୁ ଓଡ଼ିଆ ନାଟକ ଆଜି ପରିତ୍ୟକ୍ତ, ଉପେକ୍ଷିତ । ତେଣୁ ଫିଲମ୍ ସଂଖ୍ୟା ବଢୁନାହିଁ କି ବେଶି ନାଟକ ଲେଖା ଯାଉନାହିଁ । ଗଦ୍ୟ ବାହୁଲ୍ୟ ପାଇଁ ଦୁଃଖ କରିବାର ନୁହେଁ, ସମାଜର ଅବସ୍ଥା ଆଜି ଯାହା ସେଥିରେ ଗଳା ଲମ୍ବାଇ ଗୀତ ବୋଲିବାକୁ ମନୁଷ୍ୟର ସମୟ ନାହିଁ । ସେ ଆଜି ଯନ୍ତ୍ର ବ୍ୟସ୍ତ । ଶିଳ୍ପର ବିକାଶ, ମନ୍ତ୍ରର ଗଣ୍ଡରେ ହେଲେ ସୁଦ୍ଧା ଭାରତବାସୀ ଆଜି ବେସତେ ଭାବପ୍ରବଣ, ଧର୍ମ ବିଶ୍ୱାସୀ, ସିଧା ସରଳ ନୁହେଁ । ତେଣୁ ପଦ୍ୟର ସଂଖ୍ୟା ନ୍ୟୂନ ହେବା ବିଚିତ୍ର ନୁହେଁ ।

ମାତ୍ର ଏହି ଯେଉଁ ଉପନ୍ୟାସ ଓ ଗଳ୍ପ ଲେଖାଯାଉଛି, ସେ ସବୁର ସଂଖ୍ୟାକୁ ଦେଖି ଆମ୍ଭେମାନେ ତୃପ୍ତ ହେଲେ ଚଳିବ ନାହିଁ । ଆଧୁନିକ ଗଳ୍ପ ସାହିତ୍ୟ ସାରା ଜଗତରେ ଦିନକୁ ଦିନ ଗତି ବିସ୍ତାର ପୂର୍ବକ ନୂତନ ଆଦର୍ଶ ସ୍ଥାପନ କରି ସାହିତ୍ୟ ରାଜ୍ୟରେ ତାହାର ସ୍ଥାନକୁ ଉନ୍ନତ କରିବାରେ ଲାଗିଛି । ତେଣୁ ଆମ୍ଭମାନଙ୍କୁ ଦେଖି-ବାକୁ ହେବ ପୂର୍ବକାଳର ଆମ ଦେଶର ଓ ଅନ୍ୟାନ୍ୟ ଦେଶର କଥା ଗୁଡ଼ିକ ସହିତ ଏବକାଳର ଗଳ୍ପ କେତେଦୂର ସମାନ ଓ କେତେଦୂର ଭିନ୍ନ, ପୁଣି ଦେଖିବାକୁ ହେବ ଆଧୁନିକ ଓଡ଼ିଆ ଗଳ୍ପର ସ୍ଥାନ ଭାରତୀ

ତଥା ପୃଥିବୀରଗଳ୍ପ ସାହିତ୍ୟରେ କେଉଁଠାରେ ? କେବଳ ସାହିତ୍ୟରେ ନୁହେଁ ଜଗତର ପ୍ରତ୍ୟେକ କ୍ଷେତ୍ରରେ ଆଜ ପ୍ରତିଦ୍ୱନ୍ଦିତାର ମାତ୍ରା ବଢ଼ିଯାଇଛି । ସ୍ୱାଧୀନଭାରତର ପ୍ରତ୍ୟେକ ଅଞ୍ଚଳର ଭାଷାସଙ୍ଗେ ଓଡ଼ିଆ ଭାଷାକୁ ଏହି ବିଶ୍ୱ ପ୍ରତିଦ୍ୱନ୍ଦିତାରେ ଭାଗ ନେବାକୁ ହେବ । ଏହି ବିଶ୍ୱ ସହଯୋଗରେ ସହଯୋଗୀ ହେବାକୁ ହେବ । ତାହା ହେଲେ ବିଶ୍ୱ ସ୍ରୋତରେ ଭାସିଗଲେ ଓଡ଼ିଆ ସାହିତ୍ୟର ନାମ ତାଲିକାରୁ ଉଠିଯିବ । ଆଧୁନିକ ଗଳ୍ପର ବାସ୍ତବ କଳ୍ପନା ପୁରାତନ କାହାଣୀ-ଗୁଡ଼ିକ ଅପେକ୍ଷା ସାମାଜିକ ଜୀବନ ଚିତ୍ରଣ ନିମନ୍ତେ ଉତ୍କୃଷ୍ଟତର, ସମାଜର ଦୈନନ୍ଦିନ କ୍ରିୟାକଳାପ ନ୍ୟାୟ, ଅନ୍ୟାୟ, ଦ୍ୱେଷ ହିଂସା, ପ୍ରେମ, ସ୍ନେହ, ଉପକାର, ଅପକାର, କ୍ଷମା, ପ୍ରତିଶୋଧ ପ୍ରଭୃତିର ବିକାଶ ପାଇଁ ଆଜିକାଲିର ଶ୍ରେଷ୍ଠ ଗଳ୍ପଗୁଡ଼ିକ ବ୍ୟବହୃତ ହୁଏ । ସେପରି ପାରିବାରିକ ଜୀବନର ପରିବର୍ତ୍ତିତ ଆଦର୍ଶ, ପତି, ପତ୍ନୀ, ଭ୍ରାତା, ଭଗ୍ନୀ, ପିତା ପୁତ୍ରର ନୂତନ ସମ୍ବନ୍ଧ, ପ୍ରତୀଚୀ ପ୍ରାଚୀର ସାମାଜିକ ସଂଘର୍ଷ ମଧ୍ୟ ଗଳ୍ପଗୁଡ଼ିକରେ ଦକ୍ଷତାର ସହ ଚିତ୍ରଣ କରାଯାଇ ପାରେ । ଆମର ଓଡ଼ିଆ ଗଳ୍ପଗୁଡ଼ିକ ଅନେକ ଦୂର ଏହି ପଥରେ ଗମନ କରିଅଛନ୍ତି ସତ୍ୟ, ମାତ୍ର ଗଳ୍ପ ଲେଖକ ଯେତେବେଳେ ଅସଂଯତ ବା ଅଜ୍ଞାତ ଅବସ୍ଥାରେ ଲେଖନୀ ଧରନ୍ତି ସେତେବେଳେ ଗଳ୍ପ ସାହିତ୍ୟରେ ବିଭ୍ରାଟ ଘଟେ ଓ ସମାଜର ନୈତିକ ଉନ୍ନତି ପରିବର୍ତ୍ତେ ଅଧୋଗତି ହୋଇଥାଏ । ଉନ୍ନତ ଯୌନ କ୍ରିୟାର ଅବାରିତ ବର୍ଣ୍ଣନ, ଭ୍ରୂଣ ହତ୍ୟାର ଅଯଥା ଚିତ୍ରଣ, ପ୍ରକୃତିର ଅଘଟ ଘଟଣ ପୁଣି କଥାବସ୍ତୁର ସନ୍ଦର୍ଭହୀନ ଉପାଦାନ ଗଳ୍ପଗୁଡ଼ିକୁ ନୀଚ ସ୍ତରର କରି ଦେଉଛି । ଗଳ୍ପ ଲେଖିବାକୁ ମଧ୍ୟ ସାହିତ୍ୟିକ କୌଶଳ, ଭାଷାଜ୍ଞାନ ପୁଣି ବିଶେଷ ଚିନ୍ତା ଆବଶ୍ୟକ । ଏହା କେତେ ଗଳ୍ପ ଲେଖକ ଭୁଲିଯାଇ ଅତି କଦର୍ଯ୍ୟ କଥାଗୁଡ଼ିଏ ପ୍ରକାଶ କରନ୍ତି ।

କେତେ ନା' କରିଥିବା ଲେଖକ କେଞ୍ଚାଡର ଭାବେ ଏଣୁ ତେଣୁ ନବୁଝି ନବୁଝିବ ଗଳ୍ପଲେଖିବାରୁ ସେମାନଙ୍କର ସବୁ ଗଳ୍ପ ଏକପ୍ରକାର ଉତ୍କୃଷ୍ଟ ଧରଣର ହୋଇପାରୁ ନାହିଁ । ସତ୍ୟଟିକୁ ଶେଷ ପର୍ଯ୍ୟନ୍ତ ଲୁଚାଇ ରଖିବା, ଗଳ୍ପ ଶେଷରେ ଯୁକ୍ତି ସତ୍ୟଟି ଜାଣିବାପାଇଁ ସ୍ପଷ୍ଟ ଭାବେ ନକହି ଇଙ୍ଗିତ ପ୍ରଦାନ କରିବା, ତାହାରେ ଅତି ପ୍ରାକୃତିକ ବର୍ଣ୍ଣନା କରି ଅନ୍ତର୍ନିହିତ ସତ୍ୟଟିକୁ ସିଦ୍ଧ ପ୍ରକୃତ କରି ରଖିଥିବା, ଅତ୍ୟାଚାର, ଅନ୍ୟାୟ ଓ ପ୍ରତିହିଂସାର ଫଳକୁ ବିଶ୍ଳେଷଣ ନକରି, ଅଧିକାଂଶରେ ଗଳ୍ପର ଉପସଂହାର କରିବା, ସାମୟିକ ଉତ୍ତେଜନା ବା ଘଟଣା ସୂତ୍ରରେ କୌଣସି ଅସାର ଭାଷା କରାଇ ତାହାର ପରାଭବକୁ କର୍ମୀର ସ୍ୱାଭାବିକ ଶୁଦ୍ଧଗୁଣ ହେତୁ ତାହାଠାରୁ ଏଡ଼ାଇବା, ଏହି ସବୁ ଶ୍ରେଷ୍ଠ ଗଳ୍ପଗୁଡ଼ିକରେ ଆଜିକାଲି ଚଳିତ ହୁଏ । ମନସ୍ତାତ୍ତ୍ୱିକ ଗଳ୍ପ ଲିଖନ ବର୍ତ୍ତମାନ ଯୁଗର ଗଳ୍ପ ସାହିତ୍ୟର ଆଦର୍ଶ ଓ ଲକ୍ଷ୍ୟ । ଏହି ଲକ୍ଷ୍ୟରେ ପହଞ୍ଚିବାକୁ ଜଗତର ସବୁ ସାହିତ୍ୟିକ ଧାଇଁଛନ୍ତି । ଏହି ଦୌଡ଼ରେ ଓଡ଼ିଆ ଗଳ୍ପ ଲେଖକ-ମାନଙ୍କୁ ଭାଗ ନେବାକୁ ହେବ । ଅଳ୍ପ ଦିନ ପୂର୍ବେ ବାଲ୍ଲାଗୁହ୍ମି ଏଦୁରାଜ୍ ନାମକ ଜଣେ ଆନ୍ଧ୍ର ଗଳ୍ପ ଲେଖକ ପୃଥିବୀ ପ୍ରତି ଦ୍ୱନ୍ଦ୍ୱତାରେ ଦ୍ୱିତୀୟ ସ୍ଥାନ ପାଇ ତାଙ୍କ ରଚିତ 'ଜଲ୍ଲିଗ୍ରୁ ଭାନଂ' ଶୀର୍ଷକ ଗଳ୍ପ ନିମନ୍ତେ ପୁରସ୍କାର ପାଇଛନ୍ତି । ମୋର ସୁପରିଚିତ ବନ୍ଧୁ ଶାନ୍ତିଲ୍ ଶ୍ରୀରାମ ଶାସ୍ତ୍ରୀଙ୍କ ଗଳ୍ପଟି ମଧ୍ୟ ଏହି ପ୍ରତିଦ୍ୱନ୍ଦ୍ୱିତାରେ—ଭାରତୀୟ ସ୍ତର ପର୍ଯ୍ୟନ୍ତ ଉଠିଥିଲା । କେତୋଟି ଓଡ଼ିଆ ଗଳ୍ପ ଏହି ପ୍ରତିଦ୍ୱନ୍ଦ୍ୱିତାରେ ଭାଗନେଇଥିଲେ ମୁଁ ଜାଣେନାହିଁ ।

ନୀତିଶିକ୍ଷା, ଆମୋଦ ପ୍ରମୋଦ ସାମାଜିକ ଚିତ୍ରଣ, ସାମାଜିକ ଅନ୍ୟାୟ ଓ ଅତ୍ୟାଚାର ବହିଷ୍କରଣ ଇତ୍ୟାଦି ଉଦ୍ଦିଷ୍ଟ

ନେଇ ଛୋଟ ଗଳ୍ପ ଆମ ସାହିତ୍ୟରେ ବହୁତ ହେବା ପାଇଁ ବାକି ରହିଛି । ଓଡ଼ିଆ ଗଳ୍ପର ପରିସର ଯେ କେବଳ ଓଡ଼ିଶା ଭିତରେ ରହିବ, ଓଡ଼ିଆ ପୁରୁଷ ସ୍ତ୍ରୀ ଯେ କେବଳ ତାହା ଭିତରେ ସ୍ଥାନ ନେବେ ଏପରି ଧାରଣା ଭ୍ରାନ୍ତିମୂଳକ । ବିଶେଷତଃ ବର୍ତ୍ତମାନ ପରିସ୍ଥିତିରେ ଯେତେବେଳେ ଭାରତର ଜାତୀୟ ଏକତା, ପରସ୍ପର ସଦ୍ଭାବ ଓ ମହାଭାରତୀୟ ସ୍ୱାର୍ଥ ଆମ ଦେଶର ସୁରକ୍ଷା ନିମନ୍ତେ ଏକାନ୍ତ ଆବଶ୍ୟକ, ସେତେବେଳେ ଆମ ସାହିତ୍ୟର ପ୍ରତ୍ୟେକ ବିଭାଗ ଏହାର ପ୍ରଚାର, ପ୍ରସାର ଓ ଅଭିବୃଦ୍ଧି ପାଇଁ ଚେଷ୍ଟା କରିବା ଅତି ଆବଶ୍ୟକ । କି ଗଳ୍ପ କି ଉପନ୍ୟାସ କି କାବ୍ୟ କି ନାଟକ ସବୁଥିରେ ଆମ୍ଭମାନଙ୍କୁ ଉପଲବ୍ଧି କରିବାକୁ ହେବ, ଆମ୍ଭେମାନେ କେବଳ ଓଡ଼ିଆ କିମ୍ବା ବଙ୍ଗାଳୀ ନୋହୁଁ, ଭାରତୀୟ ମଧ୍ୟ । ଉପନ୍ୟାସର ସଂଖ୍ୟା ଓଡ଼ିଆ ସାହିତ୍ୟରେ କମ୍ ନୁହେ । ପୁସ୍ତକ ପ୍ରକାଶକମାନେ ଉପନ୍ୟାସ ଛପାଇବାରେ ଅଧିକ ଶ୍ରଦ୍ଧା ରଖିବାର ଦେଖାଯାଏ । ଓଡ଼ିଆ ଉପନ୍ୟାସର କାୟା ଛୋଟ ଥିବାର ଗୋଟିଏ ଅଭାବ ପାଠକେ ଅନୁଭବ କରୁଥିଲେ । ଇଂରାଜୀ ବା ଅନ୍ୟ ଭାଷାର ଶତ ଶତ ପୃଷ୍ଠାବ୍ୟାପୀ ବୃହତ୍‌କାୟ ଉପନ୍ୟାସ ଦେଖିଲେ ମନେ ହେଉଥାଏ, ଆମ ଓଡ଼ିଆରେ ଏପରି ଉପନ୍ୟାସ ନାହିଁ । ମାତ୍ର ଏବେ ବୃହତ୍‌କାୟ ଉପନ୍ୟାସର ଅଭାବ ମଧ୍ୟ କେତେଦୂର କମି ଆସିଲାଣି । ଉପନ୍ୟାସଗୁଡ଼ିକର କଥାବସ୍ତୁ ଓ ସ୍ଥାନ ଓଡ଼ିଆ ସମାଜ, ଓଡ଼ିଆ ପରିବାର ଓ ଉତ୍କଳ ପ୍ରଦେଶ । ବେଶୀଦୂର ଗଲେ, ଆମ ଉପନ୍ୟାସର ପରିସର ଅନ୍ତଃପ୍ରାଦେଶିକ ବଙ୍ଗ ଭାଷାର ପର୍ଯ୍ୟନ୍ତ ବ୍ୟାପିଥିଲା । ଓଡ଼ିଆ ଉପନ୍ୟାସରେ ଓଡ଼ିଆ ସମାଜର ଚିତ୍ର ଯେ ବେଶୀ ପରିମାଣରେ ଚିତ୍ରିତ ହେବା ଆବଶ୍ୟକ ଏଥିରେ କେହି ଦ୍ୱିରୁକ୍ତି କରି ନପାରେ । ମାତ୍ର ଏହାବେଳେକେ ଓଡ଼ିଶା ସୀମା ଭିତରେ

ବାନ୍ଧ ହୋଇ ବନ୍ଦିଲେ ଚଳିବ ନାହିଁ । ଉପେନ୍ଦ୍ରଭଞ୍ଜ ଓ କବିସୂର୍ଯ୍ୟ ସେତେବେଳେ ଲଙ୍କା ଓ କାମରୂପ ପର୍ଯ୍ୟନ୍ତ ଯିବାକୁ ଭୟ କରୁ ନଥିଲେ, ନବୀନ ଔପନ୍ୟାସିକମାନେ ଅନ୍ତତଃ ସାରା ଭାରତ ଭ୍ରମଣ କରିବା ଆବଶ୍ୟକ । ଓଡ଼ିଆ ଉପନ୍ୟାସଗୁଡ଼ିକୁ ଦେଖାଯାଏ ସାମାଜିକ ଉପନ୍ୟାସର ସଂଖ୍ୟା ଅତ୍ୟଧିକ ଓ ଐତିହାସିକ ଉପନ୍ୟାସର ସଂଖ୍ୟା ଅତି ନ୍ୟୂନ । ମାତ୍ର ଦେଶାତ୍ମବୋଧ ପାଇଁ ଐତିହାସିକ ଉପନ୍ୟାସ, ନାଟକ ଓ କାବ୍ୟର ମୂଲ୍ୟ ଖୁବ୍ ଅଛି । ଇତିହାସ ଅବଶ୍ୟ ରସ ସମ୍ବଳିତ ସାହିତ୍ୟ ପଦବାଚ୍ୟ ନୁହେଁ । ତଥାପି ଲେଖି ଜାଣିଲେ ଇତିହାସକୁ ସାହିତ୍ୟ ଏବଂ ମଧୁର ଓ ସୁନ୍ଦର କରିହେବ । ଗିବନଙ୍କ Declineand fall of the Roman Empire, ନେହରୁଙ୍କ Discovery of India ଓ ପାଣିକରଙ୍କ A survey of the History of India ଓ The Indian Revolution ମୋର ଏହି ଉକ୍ତିର ପ୍ରମାଣ ପାଇଁ ଉତ୍କୃଷ୍ଟ ଉଦାହରଣ । ସେହି ଧରଣର ଧାରାବାହିକ ଇତିହାସ ଓ ଐତିହାସିକ ବସ୍ତୁ ପୁଣି ଇତିହାସ ଉପାଦାନରେ ପ୍ରତିଷ୍ଠିତ ଉପନ୍ୟାସ ଆମ ଓଡ଼ିଆ ସାହିତ୍ୟରେ ଅତି ବିରଳ । ଚିନ୍ତାମଣି ଆଚାର୍ଯ୍ୟ ତାଙ୍କର ଇତିହାସ ପ୍ରସଙ୍ଗ ଲେଖିଲା ପରେ ଲେଖମା ବନ୍ଦ କରିଦେଇ, ଅନେକ ଦିନ ପରେ ସାଧନା ପରି ଗୋଟିଏ ଗ୍ରନ୍ଥ ଇତିହାସ ବହି ଲେଖିଛନ୍ତି । ସାଧନା ତାଙ୍କ ପ୍ରଥମ ଲିଖିତ ଇତିହାସ ପ୍ରସଙ୍ଗପରି ଉତ୍କୃଷ୍ଟ ବା ମୂଲ୍ୟବାନ୍ ନୁହେଁ । ସେ ଐତିହାସିକ ପ୍ରବନ୍ଧ ଲେଖା ବନ୍ଦ କରି ଓଡ଼ିଆ ସାହିତ୍ୟ ପ୍ରତି ଅନ୍ୟାୟ କରିଛନ୍ତି, କହିବାକୁ ହେବ । ଲକ୍ଷ୍ମୀ, ହେମଲତା ଲେଖା ହେବାର ଅନେକ ବର୍ଷ ପରେ ହା ଅନ୍ନ ପ୍ରଭୃତି କେତେ ଇତିହାସ ପ୍ରତିଷ୍ଠିତ ଉପନ୍ୟାସ ଲେଖାହେଲା, ମାତ୍ର ସେଗୁଡ଼ିକ ଅତି ମୁଷ୍ଟିମେୟ ।

ରମେଶଚନ୍ଦ୍ର ଦତ୍ତଙ୍କ ମହାରାଷ୍ଟ୍ର ଓ ରାଜପୁତ ଇତିହାସ ପ୍ରତିଷ୍ଠିତ ଉପନ୍ୟାସ । ଶୈଳବର୍ତ୍ତୀ ଲକ୍ଷ୍ମୀ ନରସିଂହଙ୍କ ରଚିତ ହେମଲତା ପୁଣି ଇଂରାଜ ଔପନ୍ୟାସିକ ସାର ୱାଲ୍‌ଟର ସ୍କଟ ରଚିତ ବିଭିନ୍ନ ଉପନ୍ୟାସମାଳା ପରି ଉପନ୍ୟାସରେ ଅମ ଓଡ଼ିଆ ସାହିତ୍ୟ ପୂର୍ଣ୍ଣ କରିବାକୁ ହେବ । ଐତିହାସିକ ଉପନ୍ୟାସ ଦ୍ୱାରା ଦେଶର ଅତୀତ ଇତିହାସ, ବୀରତ୍ୱକାହାଣୀ, ପୂର୍ବପୁରୁଷଙ୍କ ଅମର କରଣୀ ଓ ତାହାର ଅବିଚ୍ଛିନ୍ନ ପରମ୍ପରା ଉଜ୍ଜ୍ୱଳିତ ହୋଇ ଦେଶବାସୀଙ୍କୁ ତାହାର ହିତ ସାଧନରେ, ସ୍ୱାର୍ଥର ବଳି ପ୍ରଦାନରେ, ଜୀବନର ଉଚ୍ଚ ଆକାଂକ୍ଷା ପୋଷଣରେ ନୂତନ ପ୍ରେରଣା, ନୂତନ ଉତ୍ସାହ, ନୂତନ ସାହସ ଓ ଭରସା ପ୍ରଦାନ କରେ । ଏହି ଦିଗରେ ଆମର ଔପନ୍ୟାସିକମାନେ ସେମାନଙ୍କର ଲେଖନୀ ଚଳାଇବା ଉଚିତ ।

ଗଦ୍ୟମୟ କଙ୍କାଳପୂର୍ଣ୍ଣ ସମାଜରେ କାବ୍ୟ କବିତାର ସ୍ଥାନ ମଧ୍ୟ ଅଛି । ସଙ୍ଗୀତ, ଶିଳ୍ପ, ପ୍ରେମ ଓ ଆନନ୍ଦ କିଏ ଜୀବନରୁ ଛଡ଼ାଇ ଦେବାକୁ ଚାହେଁ ? କାଳିଦାସ, ଭବଭୂତି, ଜୟଦେବ, ଯଦୁମଣି ଆମ୍ଭମାନଙ୍କର ଜାତୀୟ ଭଣ୍ଡାରରେ ଅମୂଲ୍ୟ ସମ୍ପଦ ରଖି ଯାଇଅଛନ୍ତି । ସେମାନଙ୍କର ଅନୁକରଣ ଆମ୍ଭମାନଙ୍କର ଶ୍ରେୟସ୍କର, ଏଥିରେ ସନ୍ଦେହ ନାହିଁ । ଉପାଦାନର ବ୍ୟବହାର ଭଙ୍ଗୀରେ କାବ୍ୟର ସୌନ୍ଦର୍ଯ୍ୟ ଓ ସୌଷ୍ଠବ ନିର୍ଭର କରେ । ପଦ୍ମପୁରାଣ ଓ ଶିବପୁରାଣରୁ ଗୃହୀତ ପଥର ଓ ଇଟାରେ ଅଭିଜ୍ଞାନ ଶାକୁନ୍ତଳମ ଓ କୁମାର ସମ୍ଭବ ସୌଧର ମୂଳଭିତ୍ତି ପଡ଼ିଥିଲା, ସେହିପରି ମେଘଦୂତ ଓ ଉତ୍ତରରାମଚରିତ ବାଲ୍ମୀକିଙ୍କ ରାମାୟଣର ଦାନ ଥିଲା । କିନ୍ତୁ ସ୍ୱର୍ଣ୍ଣକାରର ବ୍ୟକ୍ତିତ୍ୱ, କର୍ମ କୌଶଳ, ସୌନ୍ଦର୍ଯ୍ୟାନୁଭୂତି ଅନୁସାରେ ଯେପରି ସ୍ୱର୍ଣ୍ଣାଳଙ୍କାରର ଶୋଭା ବୃଦ୍ଧି ପାଏ, ସେହିପରି କବିର କବିତା ଓ କାବ୍ୟ, ଦୈନନ୍ଦିନ ପାଠ ନମସ୍ତେ, ରେଳଗାଡ଼ିରେ

ସମସ୍ତ କଟାଇବା ନିମନ୍ତେ, ଏହିପରି କାବ୍ୟର ପ୍ରୟୋଜନୀୟତା ମୋଟେ ନାହିଁ । ମାତ୍ର କୋଠିରେ ଧାନ ଥିଲେ କେବଳ କାବ୍ୟ ଗୁଞ୍ଜ-ଚର୍ଯ୍ୟରେ ତାହାର ଅପଥ୍ୟ ବ୍ୟୟ ଉପରେ କୌଣସି ବ୍ୟକ୍ତିକୁ ଋଣଗ୍ରସ୍ତ କରେ ନାହିଁ, ସେହିପରି କାବ୍ୟ ଆମ ଜାତୀୟ ସାହିତ୍ୟର ଭୋଗ ସଂପତ୍ତି । ତାହାର ରକ୍ଷଣାବେକ୍ଷଣ ଭାବରେ ଅବହେଳା କରିବା ବୁଦ୍ଧିମାନର କାର୍ଯ୍ୟ ନୁହେଁ । ଚଳଚିତ୍ର ଆଜି ସାରା ଜଗତରେ ନାଟକ, ସଙ୍ଗୀତ ଓ କାବ୍ୟର ସ୍ଥାନ ନେଇଛି । ତା ପରକୁ ରେଡ଼ିଓ । ଏ ଦୁଇଟି କୃଷ୍ଟି ଓ ସାହିତ୍ୟର ଅଙ୍ଗ । ଏ ଦୁଇଟିକୁ ବାଦ୍ ଦେଇ ସାହିତ୍ୟକୁ ପୂର୍ଣ୍ଣାଙ୍ଗ କରିବାର ଉପାୟ ନାହିଁ । ଚଳଚିତ୍ର ପାଇଁ ଓ ରେଡ଼ିଓ ପାଇଁ ଭାରତର ଅନ୍ୟ ଅଞ୍ଚଳରେ ଯେତିକି ରଚନା ହୋଇ ସାରିଲାଣି ଓ ହେବାରେ ଲାଗିଛି ତା ତୁଳନାରେ ଓଡ଼ିଶା ବହୁ ପଛରେ ପଡ଼ିଛି । କେବଳ ଧନର ଅଭାବହିଁ ଏହାର ଏକମାତ୍ର କାରଣ ନୁହେଁ । ମନ, କୌଶଳ, ଦକ୍ଷତା ସହଯୋଗ ଏ ଦୁଇଟିର ଅଭାବ ମଧ୍ୟ ଆମ ଜାତିରେ ଇତର ଜାତି ଅପେକ୍ଷା ବହୁ ପରିମାଣରେ ଲକ୍ଷିତ ହୁଏ । ଏଥିପ୍ରତି କେବଳ ସାହିତ୍ୟିକ ନୁହନ୍ତି, ଦେଶର ଅନ୍ୟ ବର୍ଗର ଲୋକେ ମଧ୍ୟ ନଜର ଦେବା ଆବଶ୍ୟକ ।

କାବ୍ୟ ଲେଖାରେ ଆମ୍ଭମାନଙ୍କର ବେଶୀ କିଛି ଅଭାବ ନାହିଁ । ଯେତିକି ଆବଶ୍ୟକ ସେତିକି ତିଆରି ହେଉଛି । ମାତ୍ର ଗଙ୍ଗାଧର ମେହେରଙ୍କ ପରି ତପସ୍ୱିନୀ କାବ୍ୟର ସଂଖ୍ୟା ଅଧିକ ହେଲେ ଓଡ଼ିଆ କବିମାନଙ୍କର ଶ୍ରମ ଅଧିକ ଭାବେ ସାର୍ଥକ ହୁଅନ୍ତା । ମହାଭାରତାଦି ପୁରାଣଗୁଡ଼ିକ ଏହି ସବୁ କାବ୍ୟ ନିମନ୍ତେ ଉପାଦାନର ଖଣି । ପ୍ରାଚୀନ କାଳରୁ ଏହି ଆକରକର ବ୍ୟବହାର କରିବାରେ ପୃଷ୍ଠପୋଷକତାର ଅଭାବ ବର୍ତ୍ତମାନ ଓଡ଼ିଆ

ସାହିତ୍ୟରେ ଗୋଟିଏ ଅତି ଗୁରୁତର ସମସ୍ୟା । ଚନ୍ଦ୍ରକଳା ଓ କଟଣାର ଚନ୍ଦ୍ରାନନ୍ଦ ଚଂପୂ କବିସୂର୍ଯ୍ୟ ଲେଖିଥିଲେ ସତ୍ୟ; ମାତ୍ର ଜଳନ୍ତର ଓ ଆଠଗଡ଼ର ରାଜାମାନେ କବିସୂର୍ଯ୍ୟଙ୍କୁ ଆଦର ଯତ୍ନରେ ରଖି ନଥିଲେ ତାଙ୍କର କୌଣସି ଲେଖା ଦିବସର ଆଲୋକ ଦେଖି ପାରି ନ ଥାନ୍ତା । ଅତି ନିକଟ ଅତୀତ ପର୍ଯ୍ୟନ୍ତ ଏହି ରାଜା ମହାରାଜା ଓ ଜମିଦାରମାନେ ସାଧାରଣ ମାଇଫତଦାର ହିସାବରେ କାବ୍ୟ କବିତାର ପୃଷ୍ଟପୋଷକତା କରି ଆସୁଥିଲେ । ବଣିକ ସଂପ୍ରଦାୟ କୌଣସି କାଳେ ସରସ୍ୱତୀ ଆରାଧନାରେ ବ୍ରତୀ ହେବା କଥା କୌଣସି ଇତିହାସ କହେ ନାହିଁ । ରାଜା ମହା ରାଜାମାନେ ଗଲେ ଓ ଜମିଦାରମାନେ ଯିବା ଉପରେ । ତେଣୁ ସାହିତ୍ୟ ବର୍ତ୍ତମାନ ନିର୍ଭର କରୁଛି, ପୂରାଭାବେ ଦେଶର ସାମସ୍ତ ଅଧିବାସୀଙ୍କ ଉପରେ । ଏହି ଅବସ୍ଥା ମୁଦ୍ରାଯନ୍ତ୍ର ହିଁ ସାହିତ୍ୟକୁ ଏକପ୍ରକାର ସ୍ୱାଧୀନ ସ୍ଥାନ ଦେଇ ପାରିଛି । ସାହିତ୍ୟିକମାନେ ବର୍ତ୍ତମାନ ନିର୍ଭର କରିବେ କୋଟି କୋଟି ନର, ନାରୀଙ୍କ ପଠନ ସ୍ପୃହା ଉପରେ । ଏହି ସ୍ପୃହାର ସୃଷ୍ଟି ଓ ବୃଦ୍ଧି, ସାହିତ୍ୟ ସମ୍ବନ୍ଧୀୟ ବର୍ତ୍ତମାନ ସମସ୍ୟାର ଏକମାତ୍ର ସମାଧାନ ।

---

# ଅଧ୍ୟୟନ

ଭାଷା ଚଳି—ଇତିହାସରେ କଥିତ ଭାଷାର ସ୍ଥାନ ସର୍ବ ପ୍ରଥମ । ସେହି ଅବସ୍ଥାରେ ଯେତେବେଳେ ମନୁଷ୍ୟ ଜ୍ଞାନ ଅହରଣ କରିବା ଚେଷ୍ଟା କଲା ସେତେବେଳେ ତାକୁ ଗୁରୁ କହିବା ସମସ୍ତ ବିଷୟ ଅକ୍ଷରେ ଅକ୍ଷରେ ସ୍ମରଣ ରଖିବାକୁ ହେଉଥିଲା । ସେତେବେଳେ ଶିଷ୍ୟ ଗୁରୁଙ୍କ ମୁଖନିଃସୃତ ବାଣୀ ଉପରେ କେବଳ ତାହାର ଜ୍ଞାନଲାଭ ନିମନ୍ତେ ନିର୍ଭର କରୁଥିଲା । କିନ୍ତୁ ଗୁରୁଙ୍କ ପକ୍ଷେ ଥରକୁଥର ଶିଷ୍ୟକୁ କହିବା କଷ୍ଟ ସାଧ୍ୟ ହେବାରୁ ଶିଷ୍ୟଙ୍କୁ ଗୁରୁଙ୍କ ବାକ୍ୟ ଅତି ଜାଗ୍ରତରେ ଶ୍ରବଣ କରି ତାହା ମନେ ରଖିବାକୁ ହେଉଥିଲା । ଗୀତ ଓ ପଦ୍ୟ ମନେ ରଖିବା ଯେତେ ସହଜ, ଗଦ୍ୟ ମନେ ରଖିବା ସେତେ ସହଜ ନୁହେଁ । ତେଣୁ କଥିତ ଭାଷାଯୁଗର ସାହିତ୍ୟ ପଦ୍ୟ ବହୁଳ ହୋଇଥିଲା । ଗୀତ ଓ ଶ୍ଲୋକ ବ୍ୟତୀତ ସେହି ସାହିତ୍ୟରେ ଅଉ କିଛି ଶିଖିବାକୁ ନଥିଲା । ନରୱେ ଦେଶାଧିବାସୀ ପ୍ରାଚୀନ ଓ ନାର୍ସମାନଙ୍କର ସାଗା, ପ୍ରାଚୀନ ଆର୍ଯ୍ୟମାନଙ୍କର ବେଦ, ପୁଣି ପ୍ରାଚୀନ ଗ୍ରୀକ୍‌ମାନଙ୍କର ଇନିୟାଡ଼, ଇଲିୟାଡ ପ୍ରଭୃତି ପୁରାଣଚୟ ଏହି ଯୁଗର ପ୍ରତିନିଧି ସ୍ଥାନୀୟ ସାହିତ୍ୟ ଅଟନ୍ତି । ବାଲ୍ମୀକି କ୍ରୌଞ୍ଚପକ୍ଷୀର

ଦାରୁଣ ଦଶା ଦେଖି ତାଙ୍କର ରାମାୟଣ ଗାଇଥିଲେ । ପୁଣି ଲବ ଓ କୁଶ ତାଙ୍କଠାରୁ ରାମାୟଣ ଗାନ ଶିଖିଲେ । ମଧ୍ୟଯୁଗ ବେଳକୁ ଲିଖନ ପ୍ରଣାଳୀ ବହୁ ପ୍ରାଚୀନ ହୋଇ ଯାଇଥିଲେ ସୁଦ୍ଧା ମୁଖସ୍ଥ କରିବା ଅଭ୍ୟାସ ବିଦ୍ୟାଳୟରେ ଅବହମାନ କାଳରୁ ଚଳି ଆସୁଥିଲା । କୌଣସି ଗ୍ରନ୍ଥ ପଢ଼ିବାର ଅର୍ଥ ଥିଲା, ସେହି ଗ୍ରନ୍ଥକୁ ମୁଖସ୍ଥ କରିବା । ଗୁରୁ ଆଜି ଯେଉଁ ପାଠ ବତାଉଥିଲେ କାଲି ଶିଷ୍ୟକୁ "ସନ୍ଥ" ଦେବାକୁ ପଡ଼ୁଥିଲା । ପର୍ଦାର ଛାତ୍ରକୁ ସେହି ପାଠର ପୁନରାବୃତ୍ତି କରିବାକୁ ହେଉଥିଲା, କେବଳ ସଂସ୍କୃତ ପାଠରେ ନୁହେଁ, ଓଡ଼ିଆ ପାଠରେ ମଧ୍ୟ ସେହି ନୀତି ପ୍ରଚଳିତ । ଅକ୍ଷରାଭ୍ୟାସ ହେଲା ପରେ ଅବଧାନେ କେଶବ କୋଇଲିଟି 'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଗୋଟିଏ ଲମ୍ବା ତାଳପତ୍ରରେ ଲେଖି ବାଳକ ହସ୍ତରେ ଦେଇ, ତାହାକୁ କୋଇଲିର ଦଣଟି ଶିଖାଉଥିଲେ । ସେ ବୋଲିବା ଅଭ୍ୟାସ କରି ଘରେ ତାହା ଘୋଷୁଥିଲା ଓ ଗୁରୁଙ୍କ ପାଖରେ ଆସି "ସନ୍ଥ" ଦେଉଥିଲା । ତା'ପରେ ସେ ସେହିପରି ଗୁଣସାଗର ଓ ଚାଈଶଧିଆ ବା ରାସଲୀଳା ଶିଖୁଥିଲା ।

ଆଜିକାଲି ଦାସକାଠିଆମାନଙ୍କ ମଧ୍ୟରୁ କେତେ ଅକ୍ଷର ପଢ଼ିବା ଜମା ଶିଖି ନଥାଇ ସୁଦ୍ଧା ପୁରାତନ ରୀତିରେ ଗାଇବା ଶଖନ୍ତ୍ର ଓ ଦାସକାଠିଆ ନାଟରେ କୌଣସି ଭ୍ରମ ନଥାଇ ଗାଇଥାନ୍ତି ମଧ୍ୟ । କେବଳ ତାହା ନୁହେଁ, ସେମାନେ ଅକ୍ଷର ଚିହ୍ନି ନଥିଲେ ସୁଦ୍ଧା ପାଠ୍ୟର ଅର୍ଥ ସମ୍ୟକ୍ ଭାବେ ବୁଝିଥାନ୍ତି । ସେହି ଅନୁସାରେ ଅଭିନୟ କରି ଦର୍ଶକମାନଙ୍କର ଚିତ୍ତହରଣ କରନ୍ତି ଓ ସମୟେ ସମୟେ ଜଟିଳ ଓ ଦୁରୁହ ସ୍ଥାନରେ ଶ୍ରୋତାମାନଙ୍କୁ ଅର୍ଥ ବୁଝାଇ ଗୀତଟିକୁ ଅଧିକ ଶ୍ରୁତିରଞ୍ଜନ କରିଥାନ୍ତି ।

ସଭ୍ୟତାର କ୍ରମବୃଦ୍ଧି ସଙ୍ଗେ ସଙ୍ଗେ ମୌଖିକ ଭାଷା ଅପେକ୍ଷା ଲିଖିତ ଭାଷାର ଗୌରବ ବଢ଼ିଲା । ପୁଣି ଲିଖନ ନୈପୁଣ୍ୟ ଗୋଟିଏ କଳାରୂପରେ ଉଦ୍‌ବେଳିତ ହେଲା । ମୁସଲମାନ ରାଜାମାନଙ୍କ ଦରବାରରେ ଲିଖନ ବିଶାରଦମାନେ ରହି ଅତି ଚମତ୍କାରଭାବେ ବହୁ ପତ୍ର ଲେଖୁଥିଲେ । ମହମ୍ମଦ ବିନ୍ ତୋଗଲକଙ୍କ ସୁନ୍ଦର ହସ୍ତାକ୍ଷରରେ ତତ୍କାଳୀନ ଲୋକେ ମୁଗ୍ଧ ହୋଇ ଯାଉଥିଲେ ବୋଲି ଇତିହାସରୁ ଆମ୍ଭେମାନେ ଜାଣିପାରୁଁ । ଲେଖାପଢ଼ା ନଜାଣିଲେ ମୂର୍ଖ—ଏହି ଭାବ ସଭ୍ୟ ସମାଜରେ ବଦ୍ଧମୂଳ ହେବାକୁ ଲାଗିଲା । ଅକବର, ଶିବାଜୀ ପ୍ରଭୃତି କେତେ ମନୀଷୀଙ୍କୁ ବାଦ ଦେଲେ କୌଣସି ଜଣା ଶୁଣା ଲୋକ ଲେଖାପଢ଼ା ନଜାଣି ବଡ଼ ଲୋକ ବୋଲାଇ ପାରୁ ନଥିଲେ ।

ମଧ୍ୟଯୁଗରେ ହାତଲେଖା ବହୁତ ପ୍ରଚଳିତ ଥିଲା । ମାତ୍ର ହାତରେ ଲେଖି ଲେଖି ଲୋକେ ହାଲିଆ ହୋଇ ଯାଉଥିଲେ । ଲେଖିବାଟା ଗୋଟିଏ ବୃତ୍ତିରେ ପରିଣତ ହୋଇଗଲା । ତାହା ଲୋକଙ୍କୁ ପୋଷାଇବାକୁ ଲାଗିଲା । ୟୁରୋପ ଦେଶରେ ଲେଖକମାନେ Scribe ବୋଲି ପରିଚିତ ହେଲେ ଏବଂ ଆମ ଦେଶରେ ଲିଖନ କାର୍ଯ୍ୟ ବିଶେଷତଃ ବ୍ରାହ୍ମଣ ଓ କରଣ ଜାତିର ମୌଳିକ ବୃତ୍ତିରେ ପରିଣତ ହେଲା । ଏହି ସବୁ ସାମାଜିକ ବନ୍ଦୋବସ୍ତ ସତ୍ତ୍ୱେ ସମାଜରେ ବହୁ ପତ୍ରର ସଂଖ୍ୟା ତୃପ୍ତିଜନକ ହେଲନାହିଁ । ୟୁରୋପରେ ଯେତେବେଳେ ୧୪୫୩ର କନଷ୍ଟାଣ୍ଟିନୋପଲ୍ ପତନ ପରେ ନୂତନ ଜ୍ଞାନ ବିଚ୍ଛୁରିତ ହୋଇପଡ଼ିଲା, ସେତେବେଳେ ମନୁଷ୍ୟର ପଠନ ପ୍ରବୃତ୍ତି ଖୁବ୍ ଜୋର ଗତିରେ ଅଗ୍ରସର ହେଲା । ବହୁଲୋକେ ପଢ଼ିବାକୁ ଚାହିଁଲେ; କିନ୍ତୁ ଚାହିଁବା ବହିର ଅଭାବ ଘଟିଲା, ବହି ସଂଖ୍ୟା ଆବଶ୍ୟକୀୟ ସଂଖ୍ୟାର ଢେର ତଳେ ରହିଲା । ଏହି

ଅଭାବ ଦୂର କରିବା ନିମନ୍ତେ ସେହି ଯୁଗରେ ଚୀନଦେଶବାସୀଙ୍କୁ ଅନୁସରଣ କରି ୟୁରୋପବାସୀ ମୁଦ୍ରାଯନ୍ତ୍ରର ବ୍ୟବହାର କରିବାକୁ ଲାଗିଲେ । ମୁଦ୍ରାଯନ୍ତ୍ରର ଆବିଷ୍କାର ମାନବ ସଭ୍ୟତା ଓ ସଂସ୍କୃତି ଇତିହାସ ରୂପ ସୁଦୀର୍ଘ ପଥରେ ଗୋଟିଏ ସ୍ମରଣଯୋଗ୍ୟ ପ୍ରଧାନ ଘଟଣା । ଆଧୁନିକ ଯୁଗରେ ଜ୍ଞାନର ଯେଉଁ ପ୍ରସାର ହୋଇଅଛି ତାହା ମୁଦ୍ରାଯନ୍ତ୍ର ନଥିଲେ ଅସମ୍ଭବ ହୁଅନ୍ତା ।

ଭାରତବର୍ଷରେ ମୁଦ୍ରାଯନ୍ତ୍ରର ବ୍ୟବହାର ବ୍ରିଟିଶ ଯୁଗର ଗୋଟିଏ ଗୌରବମୟ ଘଟଣା । ଧର୍ମ ପ୍ରଚାର ନିମନ୍ତେ ସର୍ବପ୍ରଥମେ ଏହି ଦେଶରେ ମୁଦ୍ରାଯନ୍ତ୍ର ସ୍ଥାପିତ ହୋଇଥିଲା ସତ୍ୟ, ମାତ୍ର ଜ୍ଞାନ ପ୍ରଚାର ପାଇଁ ତାହାର ବ୍ୟବହାର କରିବାକୁ ଦେଶବାସୀଙ୍କୁ ବେଶୀ ସମୟ ଲାଗି ନଥିଲା ।

ମୁଦ୍ରାଯନ୍ତ୍ର ହେତୁରୁ ଲେଖାପଢ଼ାରେ ଆମ୍ଭମାନଙ୍କର ଯେତେବେଳେ ଆଉ କିଛି ଅସୁବିଧା ରହିଲା ନାହିଁ ସେତେବେଳେ ଜ୍ଞାନ, ଅଧ୍ୟୟନ, ଲିଖନ ପ୍ରଭୃତି ସଂକ୍ରାନ୍ତ ବିଷୟ କେତେ ଧନୀ ଓ ଅଭିଜାତ ସଂପ୍ରଦାୟର ଲୋକଙ୍କର ଏକଚାଟିଆ ଅଧିକାର ନ ହୋଇ ସମସ୍ତଙ୍କର ସାଧାରଣ ଧନ ରୂପେ ବ୍ୟବହୃତ ହୋଇ ପାରିଲା । ହତଭାଗ୍ୟ ଭାରତ ବ୍ୟତୀତ ଅନ୍ୟ ସମସ୍ତ ସଭ୍ୟ ଦେଶଗୁଡ଼ିକରେ ସାକ୍ଷର ଓ ବିଦ୍ୟାପ୍ରାପ୍ତ ସଂଖ୍ୟା ଅଧିକରୁ ଅଧିକ ହୋଇ ଜାତି ଓ ଦେଶର ବହୁ ଉନ୍ନତି ସାଧନ କଲା । ପାଠ ପଢ଼ିବା, ପଠିତବ୍ୟ ବିଷୟ ଜାଣିବା ପୁଣି ସେହି ପାଠ ଅନୁସାରେ ନିଜ ଜୀବନକୁ ପରିଚାଳିତ କରିବା ପାଇଁ ଆଧୁନିକ ଯୁଗରେ ମନୁଷ୍ୟକୁ ଯେତେ ସୁବିଧା ମିଳୁଛି ଅନ୍ୟ ଯୁଗରେ ସେପରି ମିଳି ନଥିଲା । ଏହି ସୁବିଧାର ଅବ୍ୟବହାରକୁ ବ୍ୟବହାର କରି ଯେଉଁମାନେ ପାଶବିକ ଗୁଣରାଶିରୁ ନିଜ ଜୀବନକୁ ଉଦ୍ଧାର କରି

ପାରୁ ନାହାନ୍ତି ସେମାନଙ୍କ ଠାରୁ ବଳି ମୂର୍ଖ ଅଜ୍ଞ କେହି ଥିବାର ଅନୁମାନ କରି ଯାଇ ନପାରେ । ମାତ୍ର ପାଠ ପଢ଼ିବାର ପ୍ରବୃତ୍ତି ସମସ୍ତଙ୍କର ଥାଉଁକି ତୁଏ ନାହିଁ ଏହା ଗଭୀର ଭାବେ ବିଚାରିବା କଥା । ସ୍କୁଲରେ ଛାତ୍ର ହୋଇଗଲେ ମାତ୍ରେ ଯେ ସମସ୍ତଙ୍କ ପଢ଼ିବାରେ ଶ୍ରଦ୍ଧା ଜନ୍ମିଯିବ ଏପରି ବିଚାର ଭ୍ରାନ୍ତିମୂଳକ । ମାତ୍ର ଏହି ଶ୍ରଦ୍ଧା ଅଭ୍ୟାସ, ବ୍ୟତୀତ ଅନ୍ୟ କୌଣସି ଜିନିଷ ଉପରେ ନିର୍ଭର କରେ ନାହିଁ, ଏହା ମଧ୍ୟ ଖୁବ୍ ସ୍ପଷ୍ଟ କଥା । ମନୁଷ୍ୟକୁ ଅଭ୍ୟାସହିଁ ପଶୁ ସ୍ତରରୁ ଉଠାଇ ଆଣି ମାନବ ସ୍ତରରେ ରଖିଅଛି । ଜଣେ ଲେଖକ କହିଛନ୍ତି ମନୁଷ୍ୟର ଚରିତ୍ର ବୋଇଲେ ଆଉ କିଛି ନୁହେଁ, ତାହା କେତେ ଗୁଡ଼ିଏ ଅଭ୍ୟାସର ବୋଝମାତ୍ର । Character is a bundle of habits, ଅଭ୍ୟାସକୁ ଦ୍ୱିତୀୟ ପ୍ରକୃତି ବୋଲି ନାମ ଦିଆ ଯାଇଅଛି । Habit is the second nature. ଅଭ୍ୟାସ ବିନା, ଆଳସ୍ୟ ପରାୟଣ ହୋଇ କୌଣସି ବ୍ୟକ୍ତି କୌଣସି କାର୍ଯ୍ୟରେ କୃତକାର୍ଯ୍ୟ ହୋଇ ନପାରେ, ଅଭ୍ୟାସ ଦ୍ୱାରା ସେ ସବୁ ଜୟ କରିପାରେ । Practice makes perfect । ଏହି ଅଭ୍ୟାସଟିକୁ ବାଲ୍ୟକାଳରୁ ଯତ୍ନରେ ବଢ଼ାଇଲେ, ପ୍ରୌଢ଼ାବସ୍ଥାରେ ଆଉ କିଛି କଷ୍ଟ ହେବ ନାହିଁ । ବାଲ୍ୟକାଳରେ ଯାହାର ପଢ଼ାରେ ଶ୍ରଦ୍ଧା ଜନ୍ମିଛି, ଯୁବା ବା ପ୍ରୌଢ଼ାବସ୍ଥାରେ ସେ ପଢ଼ା ଛାଡ଼ିବାକୁ ଚେଷ୍ଟା କଲେ ସୁଦ୍ଧା ଛାଡ଼ିପାରିବ ନାହିଁ । କାରଣ ଏହି ପଠନାଭ୍ୟାସଟି ତାହାର ହୃଦୟରେ ବଦ୍ଧମୂଳ ହୋଇ, ତାହାର ଦ୍ୱିତୀୟ ପ୍ରକୃତି ହୋଇ ଯାଇଥିବ । ଆହାର, ନିଦ୍ରାପରି ପଠନ ମଧ୍ୟ ତାହାର ଶାରୀରିକ ସ୍ୱାସ୍ଥ୍ୟରକ୍ଷାର ଅନ୍ୟ ଏକ ଉପାଦାନରେ ପରିଣତ ହୋଇଯିବ ।

ଯେ ନିଜ ଜୀବନରେ ବହି ପଢ଼େ ନାହିଁ ତାହାଠାରୁ ହତଭାଗ୍ୟ ଆଉ କିଏ ଏହି ସଂସାରରେ ଅଛି ? ବହି ହେଉଛି ଅମୂଲ୍ୟ ଜ୍ଞାନର

ଅସୀମ ଭଣ୍ଡାର । ଏହି ଭଣ୍ଡାରକୁ କେତେ ମହାପୁରୁଷ କେତେ ମନୀଷୀ ସେମାନଙ୍କର ସୁନ୍ଦର ମଧୁର ପବିତ୍ର ଭାବରେ ପୂର୍ଣ୍ଣ କରି ଅଛନ୍ତି । ସେମାନେ ଆଜ ନାହାନ୍ତି । ମାତ୍ର ସେମାନଙ୍କ ଭାବରାଜି ଅମରାକ୍ଷରରେ ଜାଜ୍ଜ୍ୱଲ୍ୟମାନ ହୋଇ ରହିଅଛି । ଶ୍ରୀକୃଷ୍ଣ କେଉଁକାଳଠୁଁ ଗଲେଣି, ମାତ୍ର ତାଙ୍କ ଗୀତାର ଅମୃତ ଝଙ୍କାର ପାଠକର କର୍ଣ୍ଣରେ ଅମୃତ ଢାଳୁଛି । କାଳିଦାସ ନଥିଲେ କଣ ହେଲା ସେତ କଣ୍ୱ ମୁନିଙ୍କ ଆଶ୍ରମରେ ଶକୁନ୍ତଳାଙ୍କ ସ୍ୱଭାବ ସୁନ୍ଦର ଅଙ୍ଗକୁ ଅମର କରି ରଖିଅଛନ୍ତି । ରାଧାନାଥ ନଥିଲେ ସୁଦ୍ଧା ତାଙ୍କ ଗ୍ରନ୍ଥାବଳୀ ଅଛି । ଏପରି ପୁରୁଷମାନଙ୍କ ଭେଟପାଇବା ସେମାନଙ୍କ ସହିତ ଭାବର ଆଦାନ ପ୍ରଦାନ କରିବା କି ସହଜ କଥା ? ଆମ୍ଭେମାନେ କେତେଜଣ ମନୀଷୀଙ୍କର ଅମୂଲ୍ୟ ସମୟ ପାଇବାକୁ ସମର୍ଥହେବୁଁ ? ମାତ୍ର ସେମାନଙ୍କର ରଚିତ ଗ୍ରନ୍ଥ ପଢ଼ି ସେମାନଙ୍କ ଭାବ ସହିତ ଆମ୍ଭମାନଙ୍କ ଭାବ ମିଳାଇବାକୁ, ସେମାନଙ୍କ ଛନ୍ଦରେ ଆମ୍ଭମାନଙ୍କ ରାଗିଣୀ ମିଶାଇ ଗାଇବାକୁ ଅମର ଅକିଞ୍ଚନତା ବା ଦାରିଦ୍ର୍ୟ ବାଧା ଦେଇପାରିବନାହିଁ । ଏପରି ସୁବିଧା ହରାଇବା କି ମନୁଷ୍ୟର ମୂର୍ଖତା ନୁହେଁ । ଶାସ୍ତ୍ର କହେ,ଇହ ସଂସାରରେ ନରଜନ୍ମ ଦୁର୍ଲ୍ଲଭ ଏବଂ ସେହି ନରଜନ୍ମରେ ବିଦ୍ୟା ସୁଦୁର୍ଲ୍ଲଭ । ନରତ୍ୱଂ ଦୁର୍ଲ୍ଲଭଂ ଲୋକେ, ବିଦ୍ୟା ତତ୍ର ସୁଦୁର୍ଲ୍ଲଭା । ବିଦ୍ୟା ଅର୍ଜନ କରିବାକୁ ହେଲେ ପଠନାଭ୍ୟାସ ସର୍ବାଦୌ ଓ ସର୍ବଦା ଆବଶ୍ୟକ । ଶାସ୍ତ୍ରରେ ଲେଖାଅଛି ଜ୍ଞାନ ଲାଭର ଦୁଇଟି ଅତ୍ୟାବଶ୍ୟକୀୟ ସୋପାନ ଗୁରୁ ଏବଂ ଶାସ୍ତ୍ର । ଗୁରୁ ଅବଶ୍ୟ ଶାସ୍ତ୍ର ବୁଝାଇବେ, ମାତ୍ର ଶାସ୍ତ୍ର ପାଠର ଭାର ଶିଷ୍ୟ ଉପରେ ଏକାନ୍ତ ଭାବେ ନିର୍ଭର କରେ । ଏହା କରିବାକୁ ଅଭ୍ୟାସ ନିତାନ୍ତ ଆବଶ୍ୟକ । ଅଭ୍ୟାସ ନକଲେ ପାଠପଢ଼ିବାଟା ମୁଣ୍ଡଉପରେ ଗୋଟିଏ ବଡ଼ ବୋଝ ପରି ବୋଧ ହେବ । ସେଥିପାଇଁ ଆଦୌ ଶ୍ରଦ୍ଧା ଜନ୍ମିବ

ନାହିଁ । ମାତ୍ର ଅଭ୍ୟସ୍ତ ଲୋକର କଥା ଅନ୍ୟ ପ୍ରକାର । ସେ ପାଠ ନପଢ଼ି ରହିପାରିବ ନାହିଁ । ସେ ଯେତେ ପଢ଼ୁଥିବ ସେତେ ସେ ପଢ଼ିବାକୁ ଇଚ୍ଛା କରୁଥିବ ପୁଣି ପଢ଼ିଲାବେଳେ ଭୋକ ଶୋଷ ପାସୋରି ଆନନ୍ଦ ଉପଲବ୍ଧି କରୁଥିବ ।

ଏପରି ଅଭ୍ୟାସର ଉତ୍କୃଷ୍ଟ ସମୟ ଯୁବକାବସ୍ଥା । ଆଜିକାଲି ପୁସ୍ତକର ବାହୁଲ୍ୟ ଓ ଶସ୍ତାଦର ହେତୁ ସମସ୍ତେ କିଣିବାକୁ ସମର୍ଥ । ତେଣୁ ପୂର୍ବକାଳପରି ଅଧୁନାତନ ଯୁଗରେ କୌଣସି ପୁସ୍ତକଗତ ବିଷୟ କଣ୍ଠସ୍ଥ କରିବା ଅନାବଶ୍ୟକ । ପୁଣି ପୁସ୍ତକର ସଂଖ୍ୟା ଏତେ ଅଧିକ ହୋଇଯାଇଛି ଯେ, ମୁଖସ୍ଥ କରିବା ଅସମ୍ଭବ । ତେଣୁ ଆଜିକାଲିର ଶିକ୍ଷା ପ୍ରଥାରେ କେତୋଟି ଉପାଦେୟ ଓ ସାରଗର୍ଭକ ପଦ୍ୟ ବ୍ୟତୀତ ଅନ୍ୟ କୌଣସି ବିଷୟ ସ୍ଥଳକୁ ମୁଖସ୍ଥ କରିବାକୁ ହେଉନାହିଁ । ଆଜିକାଲି ପାଠର ଉଦ୍ଦେଶ୍ୟ ଏହି ଯେ ବିଦ୍ୟାର୍ଥୀ ତାହାର ପାଠ ପଢ଼ି ସେଥିରେ ଥିବା ବିଷୟ ବୁଝିବ ପୁଣି ନିଜ ଭାଷାରେ ସେହି ବିଷୟ ବ୍ୟକ୍ତ କରିବାକୁ ସମର୍ଥ ହେବ । କିନ୍ତୁ ବୁଝିବା ପାଇଁ ଓ ବ୍ୟକ୍ତ କରିବା ପାଇଁ ତାହା ପକ୍ଷେ ଯେଉଁ ଭାଷାଗତ ଜ୍ଞାନ ଆବଶ୍ୟକ ସେହି ଜ୍ଞାନ ସେ ବହିପତ୍ର ଥରକୁ ଥର ପଢ଼ି ଲାଭ କରିବ । ଏହି ଜ୍ଞାନ ଲାଭ କରିବାକୁ ହେଲେ ପଠନ ଅଭ୍ୟାସ ନିତାନ୍ତ ଆବଶ୍ୟକ । ଯେଉଁ ବ୍ୟକ୍ତି ଯେତେ ଅଧିକ ସଂଖ୍ୟାରେ ପୁସ୍ତକ ପଢ଼ିବ ତାହାର ଭାଷା ଓ ଭାବ ରାଜ୍ୟରେ ସେତେ ଅଧିକ ଅଧିକାର ରହିବ । ତେଣୁ କେତୋଟି ପାଠ୍ୟ ପୁସ୍ତକ ପାଠକରି, ପ୍ରଶ୍ନର ଉତ୍ତର କେତେ ଘୋଷି ଦେଇ ଯେଉଁ ଯୁବକ ତାହାର ଅନ୍ୟ ସମୟ, ନାନା ଅନୁପାଦେୟ କାର୍ଯ୍ୟରେ ବ୍ୟୟ କରେ, ସେ ବିଦ୍ୟା-ଭ୍ୟାସର ପ୍ରକୃତ ଉପକାର ପାଇପାରେ ନାହିଁ । ପାଠ୍ୟ ପୁସ୍ତକଟି ଜ୍ଞାନର ବାଟ କେବଳ ଦେଖାଇଦିଏ । ମାତ୍ର ଯେ ସେହିବାଟରେ

କେବଳ ଉଦ୍ଦେଶ୍ୟ ସେ ବାଟଟି ଦେଖାଏ, କିନ୍ତୁ ବାଟରେ ଚାଲେ ନାହିଁ । ବାଟଟି ଦେଖିଲା ମାତ୍ରେ ଆମ୍ଭେମାନେ ଆମ୍ଭର ଗନ୍ତବ୍ୟ ସ୍ଥାନରେ ଉପସ୍ଥିତ ହୋଇପାରିବା ନାହିଁ । ଲକ୍ଷ୍ୟ ସ୍ଥାନରେ ପହଞ୍ଚିବାକୁ ହେଲେ ବାଟରେ ଚାଲିବା ଦରକାର । ସେହିପରି ଜ୍ଞାନ ପାଇବାକୁ ହେଲେ କେବଳ ପାଠ୍ୟ ପୁସ୍ତକରେ ଆବଦ୍ଧ ହୋଇ ରହିଲେ ଚଳିବ ନାହିଁ । ଅନ୍ୟାନ୍ୟ ବହି ମଧ୍ୟ ପଢ଼ିବା ଆବଶ୍ୟକ । କିନ୍ତୁ ଏହି ଅନ୍ୟାନ୍ୟ ବହି ପଢ଼ିବା ବେଳେ ବିଦ୍ୟାର୍ଥୀ ହୁସିଆର ହେବା ଆବଶ୍ୟକ । ଶାରୀରିକ ଶକ୍ତି ଶରୀର ନିମନ୍ତେ ଯେପରି ଖାଦ୍ୟ ଆବଶ୍ୟକ, ମାନସିକ ଉତ୍କର୍ଷ ଓ ଜ୍ଞାନଲାଭ ସକାଶେ ସେହିପରି ପଠନ ଆବଶ୍ୟକ । ଅସାର ଖାଦ୍ୟରେ ଯେପରି ଶରୀର କ୍ଷୁଣ୍ଣ ହେବା ସହଜ, ଅସାର ପୁସ୍ତକ ପାଠରେ ମନ କଳୁଷିତ ଓ ଜ୍ଞାନ ଅସଦ୍‌ମାର୍ଗରେ ଚାଳିତ ହେବା ଖୁବ୍ ସମ୍ଭବ । ଏହି ବିପଦରୁ ଉଦ୍ଧାର କରିବା ଅଭିପ୍ରାୟରେ ପ୍ରତ୍ୟେକ ସ୍କୁଲରେ ପାଠାଗାର ପାଇଁ ନିମନ୍ତେ ଗୋଟିଏ ପୃଥକ୍ ସମୟ ରଖାଯାଇଥାଏ ଓ ସେହି ଘଣ୍ଟାରେ ବାଳକମାନେ ଶିକ୍ଷକଙ୍କର ପରାମର୍ଶ ଓ ଉପଦେଶ ପାଇଥାଆନ୍ତି । ବିଖ୍ୟାତ ଇଂରାଜ ଲେଖକ ରସ୍କିନଙ୍କ ମତ ଅନୁସାରେ ସବୁ ପୁସ୍ତକ ପୁସ୍ତକବାଚ୍ୟ ନୁହେଁ । କେତେ ବହି ଅଛି ଯେଉଁଗୁଡ଼ିକ ଏତେ ଖରାପ ଯେ ତାହାର ପାଖ ମାଡ଼ିବା ଭୟାବହ । ବଜାରରେ ଏପରି ବହି ଶସ୍ତା ଦରରେ ମିଳିପାରେ । ବଜାରର ଅସ୍ୱାସ୍ଥ୍ୟକର ଖଡ଼ାପିଠା ଅପେକ୍ଷା ଏହି ଧରଣର ଅସାର ବହି ବାଳକମାନଙ୍କର ଅଧିକ କ୍ଷତି କରେ । ଆଉ ଏକ ପ୍ରକାର ବହି ଅଛି ଯେଉଁଗୁଡ଼ିକ ଆକାର ପ୍ରକାରରେ ବହି ନାମର ଯୋଗ୍ୟ, ମାତ୍ର ସେଗୁଡ଼ିକ ଦୈନିକ ଓ ସାପ୍ତାହିକ ଖବର କାଗଜର ପାଇଁ କରନ୍ତି । Knowledge ଓ Information ମଧ୍ୟରେ ବହୁତ ପାର୍ଥକ୍ୟ ରହିଛି । ଉପରୋକ୍ତ

ଧରଣର ବହିଗୁଡ଼ିକ କେବଳ information ଯୋଗାଇଥାନ୍ତି । ବିଦ୍ୟାର୍ଥୀ ଜୀବନରେ informationର ଆବଶ୍ୟକତା ନଥାଇ ନାହିଁ । ଏହାର ଅଭାବରେ ତାକୁ ସମାଜରେ ବିପଥ୍ରନ୍ ଜ୍ଞଳଙ୍କଲ୍ ପରି ଅପ୍ରସ୍ତୁତ ହୋଇ ପଡ଼ିବାକୁ ପଡ଼ିବ । ହ୍ୟାଟଲର ଓ ଚର୍ଚ୍ଚିଲଙ୍କର ନାମ ନଜାଣି ଯଦି କୌଣସି ବାଳକ ରହେ, ତେବେ ତାକୁ କୁଅଁର ବେଙ୍ଗ ଅପେକ୍ଷା ଊଣା ବୋଲି କହିବାକୁ ହେବ । ମାତ୍ର ଏହି ଧରଣର ବହି, ଯଥା—ଭ୍ରମଣ ବୃତ୍ତାନ୍ତ, ଉପନ୍ୟାସ କଥା, କୌଣସି ଘଟଣାର ବର୍ଣ୍ଣନା ନିମନ୍ତେ ଜୀବନର ବେଶୀ ସମୟ ବ୍ୟୟ କଲେ ଚଳିବ ନାହିଁ । ଜ୍ଞାନ ଅପାର ମାତ୍ର ମନୁଷ୍ୟର ସମୟ ଅଳ୍ପ । ଅସଂଖ୍ୟ ପୁସ୍ତକ ମନୁଷ୍ୟ ଆଗରେ ପଡ଼ିରହିଛି, ଯେପରି ବ୍ୟଞ୍ଜନ ଦ୍ୱାଦଶୀରେ ଏକାଦଶୀ ପାଳିବା ବ୍ୟକ୍ତି ଆଗରେ ବହୁବିଧ ଅନ୍ନ ବ୍ୟଞ୍ଜନର ଥାଳୀ ରଖାଯାଇଥାଏ । ସବୁ ପୁସ୍ତକ ପଢ଼ିବାକୁ ତ ତାହାର ସମୟ ନାହିଁ । ଆମ୍ଭେ ଯେବେ ସବୁ ଥାଳୀର ଉପଣ ଖାଇପାରିବା ନାହିଁ, ଭଲ ଉପଣ ଆମ୍ଭମାନଙ୍କୁ ବାଛିବାକୁ ହେବ । ଭୋଜି ଘରେ ପିଠାପଣା ନଖାଇ ଭାତ ଡାଲିରେ ଯେ ପେଟ ଭରତି କରେ ତାକୁ କେହି ବୁଦ୍ଧିମାନ କହିବେ କି ? ସେହିପରି ଏହି ଜ୍ଞାନ ସଂପାଦନ ରୂପ ଅମୃତମୟ ଭୋଜିରେ ଆମ୍ଭମାନଙ୍କୁ ପ୍ରକୃତ ପୁସ୍ତକ ବାଛି ନେବାକୁ ହେବ । ପୁସ୍ତକ ପଦବାଚ୍ୟ ପୁସ୍ତକ କ'ଣ, ଆମ୍ଭେମାନେ ଗୁରୁଙ୍କ ଉପଦେଶ ଓ ନିଜର ଜ୍ଞାନ ବଳରେ ଜାଣିବାକୁ ସମର୍ଥ ହୋଇପାରୁଁ । ସେପରି ବହି ପାଠ କଲେ ଜୀବନ କୃତାର୍ଥ ହେବ ଓ ମନୁଷ୍ୟ ଜନ୍ମ ସାର୍ଥକ ହେବ । ନଚେତ୍ ନରଦେହ ଧାରଣ କରି ସୁଦ୍ଧା ଆମ୍ଭେମାନେ ପଶୁତ୍ୱ ବନ୍ଧନରୁ ମୁକ୍ତ ହୋଇପାରିବା ନାହିଁ । ଅଧ୍ୟୟନାଭ୍ୟାସ ସଭ୍ୟତାର ଏକ ପ୍ରଧାନ ଅଙ୍ଗ । ଜୀବନର ଶେଷ ପର୍ଯ୍ୟନ୍ତ ଯେଉଁ ବ୍ୟକ୍ତି ଏହି ଅଭ୍ୟାସ କରିପାରିବ ତାହାର

ଜୀବନ ଧନ୍ୟ । ଯାହାର ଏହି ଅଭ୍ୟାସ ଥାଏ, ସେ ସଂସାରର ଜଞ୍ଜାଳରେ ରହି ମଧ୍ୟ ସୁଖ ଓ ଶାନ୍ତି ଲାଭ କରିପାରେ । ସେ ସଂସାରର (master minds) ମନୀଷୀମାନଙ୍କ ସଂସ୍ପର୍ଶରେ ଆସେ । ସେ ଅକିଞ୍ଚନ ହେଲେ ମଧ୍ୟ ମହତ୍ତ୍ୱ ଲୋକଙ୍କର ସଙ୍ଗ ଲାଭ କରେ । ସେ ସେମାନଙ୍କର ସଙ୍ଗେ ଉନ୍ମୁକ୍ତ ଜ୍ଞାନ ପ୍ରାଙ୍ଗଣରେ ବିହାର କରି ଅମିତ ଆନନ୍ଦ ଉପଭୋଗ କରେ, ତାହାର ମନ ମନୀଷୀ ପ୍ରଚ୍ଛରିତ ଅପୂର୍ବ ସତ୍ୟରେ ସର୍ବଦା ଉନ୍ନତ ଓ ନିର୍ମଳ ରହେ, ତାହାର ପ୍ରାଣରେ ଏକ ପ୍ରକାର ନୈତିକ ଓ ଆଧ୍ୟାତ୍ମିକ ଶକ୍ତିର ଉଦ୍ରେକ ହୁଏ । ସେ ଏହି ଅପୂର୍ବ ଭାବରାଜ୍ୟରେ ବିହ୍ୱଳ ହୋଇ ସଂକୀର୍ଣ୍ଣ ବର୍ତ୍ତ୍ର ଓ କଳୁଷପୂର୍ଣ୍ଣ ଚିନ୍ତାରୁ ମୁକ୍ତ ରହେ । ଯେ ନିଜ ଅମୂଲ୍ୟ ଜୀବନର ବହୁମୂଲ୍ୟ ସମୟ ଉତ୍ତମ ବହି ପାଠରେ ବ୍ୟୟ ନକରି, ପରର କୁତ୍ସାରଟନା, ପରନିନ୍ଦା, ପରଚର୍ଚ୍ଚା ଓ ବୃଥା ବିନୋଦରେ ଅତିବାହିତ କରେ ସେ ଆଧୁନିକ ସଭ୍ୟ ସମାଜର ଉପଯୁକ୍ତ ନୁହେଁ । "ଆଧୁନିକ ବର୍ବର," ଉପାଧି ତା ପକ୍ଷେ ଉପଯୁକ୍ତ ଅଟେ । ଜଣେ ଲେଖକ କହିଛନ୍ତି, Reading is one of the chief civilizing infuences of life. A habit of reading is an invariable characterstic of a well educated modern man or woman. ବହି ପଢ଼ିବା ସମ୍ବନ୍ଧେ ଅନ୍ୟ ଏକ ଉପଦେଶ ଆବଶ୍ୟକ । କୌଣସି ଜିନିଷର ଗୋଟିଏ ସୀମା ବରାବର ଅଛି । ଏହି ଅଧ୍ୟୟନ ସମ୍ବନ୍ଧେ ମଧ୍ୟ ତାହା । କେତେ ଲୋକ ବହି ପଢ଼ି ପଢ଼ି ଗ୍ରନ୍ଥକୀଟ ହୋଇ ପଡ଼ନ୍ତି । ଏପରି ହେବା ଉଚିତ ନୁହେଁ । ବାଳକମାନଙ୍କୁ ଏହି "ଗ୍ରନ୍ଥକୀଟତ୍ୱରୁ" ଉଦ୍ଧାର କରିବା ନିମନ୍ତେ, ମାନସିକ ସ୍ତରର ବାହୁଲ୍ୟରୁ ସେମାନଙ୍କୁ ଦୂରରେ ରଖିବା ଅଭିପ୍ରାୟରେ ପୁଣି ଶିକ୍ଷାକୁ ଏକମୁଖୀ ନକରି ବହୁ

ମୁଖୀ କରିବା ଉଦ୍ଦେଶ୍ୟରେ ପ୍ରତ୍ୟେକ ବିଦ୍ୟାଳୟରେ ବ୍ୟାୟାମ ଓ ହସ୍ତ କୌଶଳ ଇତ୍ୟାଦିରେ ବାଳକମାନଙ୍କୁ ଶିକ୍ଷା ଦିଆଯାଉଅଛି । ଖାଦ୍ୟ ସଂବନ୍ଧେ ଯେପରି balance diet ଦରକାର, ଉପଯୁକ୍ତ ଜ୍ଞାନ ସମ୍ବନ୍ଧେ ମଧ୍ୟରେ ସେହିପରି କିଛି ଗୋଟିଏ ଅନୁପାତ ରହିବା ଆବଶ୍ୟକ । ଗ୍ରନ୍ଥପାଠରେ ଇଡ଼ୀଭୂତ ହୋଇ ଜୀବନର ଅନ୍ୟ କର୍ତ୍ତବ୍ୟରେ ଅବହେଳା କଲେ ଚଳିବ ନାହିଁ । ମନୁଷ୍ୟର ଆହାର୍ଯ୍ୟ "ସର୍ବସ୍ବ ନୁହେଁ" ଏହା ନିଶ୍ଚୟ, ମାତ୍ର ଆହାର ବିନା ସେ ଶରୀରକୁ ବଞ୍ଚାଇବ କିପରି ? ଶରୀର ନରହିଲେ ତାହାର ସଂସ୍କୃତିର ଅସ୍ଥାନ ହେବ କେଉଁଠାରେ ? ଏଥି ସମ୍ବନ୍ଧେ ଜଣେ ଲେଖିଛନ୍ତି, "Man does not live by bread alone But at the same time he must have bread before be can have culture × × Unless body is well cared for ideas and ideals cannot reside in it. There is a balance in nature; similarly there should be a balance in education.'' ଗ୍ରନ୍ଥକୀଟ ହୋଇ ଜୀବନର ଅନୁପାତ ଭୁଲିଗଲେ ଜୀବନର ସୌନ୍ଦର୍ଯ୍ୟ ବିନଷ୍ଟ ହୋଇଯିବ । ବିଦ୍ୟା ଓ ଜୀବନ, ଜ୍ଞାନ ଓ ବିଜ୍ଞାନ (Science) ସମାନ୍ତର ଭାବେ ଗତି କରିବା ଆବଶ୍ୟକ । କେନାଲ୍ଭିଲ ଦିଅଁ ଗଡ଼ୁ ଗଡ଼ୁ ମାଳତୀ ଓ ଶୁଦ୍ଧ ଉଚ୍ଚାରଣ କରି ବାସୁଦେବଙ୍କୁ କାର୍ଯ୍ୟଦେବ କହିଲା ପରି ହେବ । ଯେ କୌଣସି ବିଷୟର ଅତିଶଯ୍ୟ ଗର୍ହିତ ଅଟେ । ସେହି ପରି ପଥ ଗ୍ରନ୍ଥ ପାଠ ଅଭ୍ୟାସ ସଙ୍ଗ ସଙ୍ଗେ ପଠିତବ୍ୟ ବିଷୟକୁ ବାସ୍ତବ ଜୀବନରେ ସଲଗ୍ନ ନକଲେ ତାହାର ଉପାଦେୟତା ବାସ୍ତବତାର ଧାରଣ କରି ଅଦୃଶ୍ୟ ହୋଇଯାଏ । ମାତ୍ର ଯେଉଁ ବ୍ୟକ୍ତି ଜୀବନରେ କୌଣସି ସଦ୍ ଗ୍ରନ୍ଥ ଅଧ୍ୟୟନ କରି ନାହିଁ ତା ପକ୍ଷେ ଏପରି କୌଣସି ବିଶ୍ବବିତ ଆବଶ୍ୟକତା ନାହିଁ । ସେ ବସ୍ତୁସ୍ଥ

ଗତ କ'ଣ ହେବ ଶଗୁଣିବାର କଥା । ଏହି ଦୀପ ଶିଖାଟି ଉପରେ ଦେଶର ଅନେକ ନିର୍ଭର କରେ । ଏହି ଅନୁଷ୍ଠାନଗୁଡ଼ିକରୁ ଅନେକ ଯାଇ ତିମିର ଅଜ୍ଞାନ ଅନ୍ଧକାର ଦୂର କରିବ । ମାତ୍ର ଜ୍ଞାନ ଦୀପଟିକୁ ଛାତ୍ର ପଠନାଭ୍ୟାସ ତୈଳଦ୍ୱାରା ଯଦି ପ୍ରଜ୍ଜ୍ୱଳିତ କରି ନ ରଖିବ, ଦେଶରେ ଅଜ୍ଞାନ ଅନ୍ଧକାର ମାଡ଼ିଯିବ ଓ ମୂର୍ଖତା ଅନ୍ଧକାରରେ ଭବିଷ୍ୟତ ବଂଶଧର ଜୀବନ ଯାପନ କରି ପିତୃ ପୁରୁଷଙ୍କୁ ତିରସ୍କାର କରିବେ । ଭବିଷ୍ୟତ ଶିକ୍ଷିତ ଯୁବକମାନେ ଅତୀତ ଓ ଭବିଷ୍ୟତ ସଂସ୍କୃତି ଯୋଗସୂତ୍ରର ଅଧିକାରୀ । ଏହି ଅଧିକାରର ସମ୍ୟକ ବ୍ୟବହାର କରିବା ସେମାନଙ୍କର କର୍ତ୍ତବ୍ୟ ।

---

# ଶ, ସ, ଷ

ଶ,ସ ଏବଂ ଷ,ର ଠିକ୍ ଉଚ୍ଚାରଣ ସମସ୍ତେ କରି ପାରନ୍ତି ନାହିଁ । ମୋର ଜଣେ ବାଲ୍ୟ ସହଚର ବ୍ୟାକରଣ ଶିଖିଲବେଳେ ଏହି ତିନୋଟି ଅକ୍ଷରକୁ ଏକ ପ୍ରକାର ଉଚ୍ଚାରଣ କରିବା ଦେଖି ଆମ୍ଭେ-ମାନେ ତାଙ୍କୁ ହାସ୍ୟ କରିଥାଉଁ । ଡେଙ୍ଗା ଶ, (ତାଲବ୍ୟଶ) ପେଟ ଫୋଡ଼ା ଷ (ମୂର୍ଦ୍ଧନ୍ୟ ଷ) ଏବଂ ମ,ସ, (ଦନ୍ତ୍ୟ ସ) ଏହି ତିନୋଟି ଅକ୍ଷର ତାଙ୍କ ପକ୍ଷେ ସମାନ, ଭିନ୍ନ ଭିନ୍ନ କରି ବୋଲିବାକୁ ସେ ପାରୁ ନଥାନ୍ତି । ସେମାନଙ୍କ ପକ୍ଷେ ସାବଧାନ, ଷାବଧାନ, ଅବଶ୍ୟକ, ଅବଷ୍ୟକ ଏବଂ ଅବଶ, ଅବଷ ହୋଇଥାଏ । ଅଶିକ୍ଷିତ ଲୋକ ସ୍ପଷ୍ଟ ଭାବେ ଉଚ୍ଚାରଣ କରି ପାରନ୍ତି ନାହିଁ । ପୌଷ ମାସକୁ, ପୌସ ମାସ, ପୋଷା କୁକୁରକୁ, ପୋସା କୁକ୍କୁର ଏବଂ ଷାଠିଏକୁ ସାଠିଏ କହିଥାନ୍ତି । କେତେ ବ୍ୟକ୍ତି ଅଭ୍ୟାସ ଅଭାବରୁ ତାଲବ୍ୟ ଶ,ର ଠିକ୍ ଉଚ୍ଚାରଣ ପରିବର୍ତ୍ତେ ଦନ୍ତ୍ୟ 'ସ' ର ଉଚ୍ଚାରଣ କରନ୍ତି । ଯଥା ଶାବକ ନକହି ସାବକ ଏବଂ ଶପଥ ପରିବର୍ତ୍ତେ ସପଥ, ଶଗଡ଼ ପରିବର୍ତ୍ତେ ସଗଡ଼ କହନ୍ତି । ସାଧାରଣତଃ ଦନ୍ତ୍ୟ ସ ଉଚ୍ଚାରଣରେ କିଛି କଷ୍ଟ ହୁଏ ନାହିଁ । ତାହା ଉଚ୍ଚାରଣ କରିବା ସହଜ ହୋଇ

ଥିବାରୁ ଇଙ୍ଗାନୁକରଣପ୍ରିୟଙ୍କ ବ୍ୟତୀତ ଆଉ କେହି ଅଶୁଦ୍ଧ ଉଚ୍ଚାରଣ କରନ୍ତି ନାହିଁ । ସମାଜ, ସାଗର, ସମ୍ରାଟ, ମାସ ପ୍ରଭୃତି ଶବ୍ଦ ଉଚ୍ଚାରଣରେ କିଛି ବିଭ୍ରାଟ ଉପସ୍ଥିତ ହୁଏ ନାହିଁ ।

ହ୍ରସ୍ୱ ଇ ଏବଂ ଦୀର୍ଘ ଈ ର ବ୍ୟବହାର ଶୁଦ୍ଧ ଭାଷା କ୍ଷେତ୍ରରେ ସହଜ ବ୍ୟାପାର ନୁହେଁ । ଓଡ଼ିଆ ଭାଷାରେ ଦୀର୍ଘ ଈ ଅକ୍ଷରର (ବନାନ ବ୍ୟତୀତ) ଅତ୍ୟଳ୍ପ ବିରଳ । ଇ କିମ୍ବା ଈ ଥିବା ପଦଗୁଡ଼ିକ ମଧ୍ୟରୁ କୋଟିକରେ ଗୋଟିଏ ପଦରେ ଈ ର ବ୍ୟବହାର ହୁଏ କହିଲେ ଚଳେ । ଈଦ୍, ଈଶ୍ୱର, ଈକ୍ଷଣ ପ୍ରଭୃତି କେତେକ ପଦ ବାଦ ଦେଲେ ସର୍ବତ୍ର ହ୍ରସ୍ୱ ଇ ର ବ୍ୟବହାର ଦେଖାଯାଏ । ମାତ୍ର ଈକାର ବା ଈ ବନାନ ର ଅବସ୍ଥା ସେପରି ନୁହେଁ । କେଉଁଠାରେ ଇ କାର ଏବଂ କେଉଁଠାରେ ଈ କାର ବ୍ୟବହାର କରିବାକୁ ହେବ ତାହାର କିଛି ଧରାବନ୍ଧା ନିୟମ ଥିଲା ପରି ଜଣାପଡ଼େ ନାହିଁ । ଏହି ହେତୁରୁ ନୂତନ ଲେଖକମାନଙ୍କର ପଦ ଓ ବାକ୍ୟରେ ବହୁତ ବନାଶୁଦ୍ଧି ଦୃଷ୍ଟିଗୋଚର ହୁଏ । ଶୁଦ୍ଧ ଉଚ୍ଚାରଣ ଦ୍ୱାରା ବର୍ଣ୍ଣାଶୁଦ୍ଧି ଅନେକ ଦୂର କମିବା ସମ୍ଭବପର ମାତ୍ର ସାଧାରଣ କଥାବାର୍ତ୍ତା କହିଲାବେଳେ ଅନେକେ ଦୀର୍ଘ 'ଈ' ଏବଂ ହ୍ରସ୍ୱ 'ଇ'ର ଶୁଦ୍ଧ ବ୍ୟବହାର କରନ୍ତିନାହିଁ, ସେ ହେତୁରୁ ଏହି ଉଭୟ ଉଚ୍ଚାରଣଗତ ପ୍ରଭେଦ ଲକ୍ଷିତ ଏବଂ କଥିତ ଭାଷାରୁ ଉଠାଇ ଦେବା ପାଇଁ କେତେକ ସାହିତ୍ୟିକ ଓ ଭାଷାତତ୍ତ୍ୱ ପଣ୍ଡିତ କହନ୍ତି । ମାତ୍ର ଶୁଦ୍ଧ ଉଚ୍ଚାରଣ କରିବା ନିମନ୍ତେ ଯଦି ଚେଷ୍ଟା କରାଯିବ ତେବେ ବର୍ଣ୍ଣାଶୁଦ୍ଧିର ସଂଖ୍ୟା ଅନେକ ଦୂର କମିଯିବ । ଯେଉଁ ଅକ୍ଷର ଦୀର୍ଘ ଈକାର ଦ୍ୱାରା ସଂଯୁକ୍ତ ସେହି ପଦର ଦୀର୍ଘ ଉଚ୍ଚାରଣ କରିବାକୁ ହେବ । ସାଧାରଣ ଲୋକେ

ଶିକ୍ଷା କିମ୍ବା ଅଭ୍ୟାସଅଭାବରୁ ସେମାନେ ଶୁଦ୍ଧ ଉଚ୍ଚାରଣ ନ କରି ଅଶୁଦ୍ଧ ଉଚ୍ଚାରଣ କରନ୍ତି ବୋଲି ଭାଷାର ନିୟମକୁ ଭାଙ୍ଗିଦେବା ଏବଂ ଦୀର୍ଘ ଓ ହ୍ରସ୍ୱ ଇକାର ପ୍ରଭେଦ ଭାଷାରୁ ଉଠାଇ ଦେବା ଠିକ୍ ହେବନାହିଁ । ପରୀକ୍ଷା, ପ୍ରୀତ, ବୀତ, ନୀତ, ପଦଗୁଡ଼ିକର ଦୀର୍ଘ ସ୍ୱର ସ୍ପଷ୍ଟ ଭାବେ ଉଚ୍ଚାରିତ ହେଲେ ଭାଷାର କୌଣସି କ୍ଷତି ହେବ ନାହିଁ । ପୁଣି ଶୁଦ୍ଧ ଉଚ୍ଚାରିତ ପଦଗୁଡ଼ିକ ଲିଖିତ ହେଲେ ବନାନ ଭୁଲ ହେବାର ଆଶଙ୍କା କମିଯିବ । ଗୀତ ଓ ଶୀତ, ଶୀତଳ ଓ ପିତଳର ଶୁଦ୍ଧ ଉଚ୍ଚାରଣ ଲୋକେ କରି ପାରୁ ନାହାନ୍ତି ବୋଲି ଗୀତକୁ ଗିତ କରିବା କିମ୍ବା ପିତଳକୁ ପୀତଳ କରିବା ଠିକ ହେବ ନାହିଁ । ଆମ୍ଭମାନଙ୍କ ଲେଖିଲା ବେଳେ ଯେପରି ଶୁଦ୍ଧ ବର୍ଣ୍ଣ ଏବଂ ଶୁଦ୍ଧ ବନାନ ବ୍ୟବହାର କରିବା ଅବଶ୍ୟକ ସେହିପରି କହିଲା ବେଳେ ଶୁଦ୍ଧ ଏବଂ ସ୍ପଷ୍ଟ ଉଚ୍ଚାରଣ ଅର୍ଥାତ୍ ଲିଖିତ ପଦର ଠିକ ଉଚ୍ଚାରଣ କରିବା ବିଧିସଙ୍ଗତ ।

ହ୍ରସ୍ୱ ଉ ଏବଂ ଦୀର୍ଘ ଊ ସମ୍ବନ୍ଧରେ ମଧ୍ୟ ସେହିପରି ଉଚ୍ଚାରଣ ଓ ଲିଖନରେ ଶୁଦ୍ଧ ହେବାକୁ ଚେଷ୍ଟା କଲେ ଲେଖାରେ କିମ୍ବା କଥାରେ କିଛି ଅଶୁଦ୍ଧ ରହିବ ନାହିଁ । ସାଧାରଣତଃ କଥାବାର୍ତ୍ତା କଲାବେଳେ ଦୀର୍ଘ ଊ କାର ପଦଗୁଡ଼ିକୁ ଆମ୍ଭମାନେ ହ୍ରସ୍ୱ ଉ ରେ ପରିଣତ କରିଥାଉଁ । ମୂଷାକୁ ମୁଷା, ଶୂକରକୁ ଶୁକର ଏବଂ ମୂଳକୁ ମୁଳ, ବୋଲି କହୁ । ଏହାଦ୍ୱାରା ମନୁଷ୍ୟର ଚେଷ୍ଟା ଅଳ୍ପ ପରିଶ୍ରମରେ କରିବା ଅଭ୍ୟାସ କରିବାକୁ । ଦୀର୍ଘ ଉଚ୍ଚାରଣରେ ମନୁଷ୍ୟର ଫୁସ୍ଫୁସ ନିଃଶ୍ୱାସ ବେଶି ହୁଏ । ତେଣୁ ସେ ଦୀର୍ଘ ସ୍ୱରକୁ ହ୍ରସ୍ୱ କରି ଦିଏ ମାତ୍ର ଅତି ଚତୁର ହୋଇ କିଛି ପରିଶ୍ରମ ନକଲେ ସେଥିରୁ ମାନବ ସମାଜର ଦୁର୍ଗତିର ମାତ୍ରା ସୀମା

ଲଙ୍ଘନ କରବ, ସେପରି ପଦ ଉଚ୍ଚାରଣ ସହଜ କରିବାକୁ ଅଶୁଦ୍ଧ ଉଚ୍ଚାରଣ କଲେ ଭାଷାର ବନ୍ଧନ, ନୟନ, ସୌନ୍ଦର୍ଯ୍ୟ ବିନଷ୍ଟ ହୋଇ ଯାଏ ।

ଓକାର ଯୁକ୍ତ ପଦଗୁଡ଼ିକୁ ସାଧାରଣ ଲୋକେ ଶିକ୍ଷାର ଅଭାବ ହେତୁ ଉକାର ପଦରେ ପରିଣତ କରନ୍ତି । ଗୋଡ଼ ନ କହି ଗୁଡ଼, ଷୋହଳ ନକହି ସୁହଳ, ପୋହଳା ନକହି ପୁହଳା ଏବଂ ଗୋବର ନକହି ଗୁବର କହନ୍ତି । ଏହି ପ୍ରକାର ଅଶୁଦ୍ଧ ଉଚ୍ଚାରଣ ଓଡ଼ିଶାର କେତେ ଅଞ୍ଚଳରେ ବେଶି ପରିମାଣରେ ଦେଖାଯାଏ । ବାଲ୍ୟାବସ୍ଥାରୁ ପରମ୍ପର ଅନୁକରଣ ହେତୁ ଏହି ଅଶୁଦ୍ଧ ବ୍ୟବହାର ଏତେ ଦୃଢ଼ ବଦ୍ଧମୂଳ ହୋଇଯାଏ ଯେ ପରିଣତ ଅବସ୍ଥାରେ ବିଶେଷ ଚେଷ୍ଟା କଲେ ମଧ୍ୟ ସେହି ଅଶୁଦ୍ଧ ଉଚ୍ଚାରଣରୁ ମୁକ୍ତ ଲାଭ କରିବା କଷ୍ଟକର ହୋଇଥାଏ । ଲୋକେ କହୁଛନ୍ତି ବୋଲି ଓକାରଯୁକ୍ତ ପଦଗୁଡ଼ିକ ଉକାରଯୁକ୍ତ କରି ଉଚ୍ଚାରଣ କଲେ କିମ୍ବା ଲେଖିଲେ ସାହିତ୍ୟର ଅବନତି ନିଶ୍ଚୟ ଘଟିବ । ଏପରି ଅଶୁଦ୍ଧ ଓ ଅବନତ ଭାଷାକୁ ସଂସ୍କୃତ ଭାଷା କହିବା ଠିକ୍ ହେବନାହିଁ । ଯାହା ଅନୁଚିତ ତାହାର ନିରାକରଣ ଏବଂ ଯାହା ସଙ୍ଗତ ତାହାର ବ୍ୟବହାର ଭାଷା ସଂସ୍କାରର ଉଦ୍ଦେଶ୍ୟ ହେବା ଅବଶ୍ୟକ । ଶିକ୍ଷା ଅଭାବରେ ଯେଉଁ ଭାଷା ସାଧାରଣ ବ୍ୟବହାର ହେତୁ ଅଶୁଦ୍ଧ ହୋଇଅଛି ସେହି ଭାଷାକୁ ସାହିତ୍ୟରେ ସ୍ଥାନ ଦେବା କିମ୍ବା ଶୁଦ୍ଧ ବୋଲି କହିବା ଭାଷା ସଂସ୍କାରର ଅପବ୍ୟବହାର ମାତ୍ର ।

କେତେ ପଦ ଅଛି ଯେଉଁଗୁଡ଼ିକ ଉଚ୍ଚାରଣରେ ସମାନ ଶୁଣିଲେ ମଧ୍ୟ ଲିଖନରେ ଭିନ୍ନ ଅଟେ । ଯଥା—ଶ୍ରବଣ, ଶ୍ରାବଣ, କ୍ଷିପ୍ର, ସୃଷ୍ଟି, ଏହି ପଦଗୁଡ଼ିକର ଶ ଏବଂ ଅକ୍ଷରର ଉଚ୍ଚାରଣ

ଏକପ୍ରକାର ମାତ୍ର ଲେଖା ଭିନ୍ନ ପ୍ରକାର । ଏପ୍ରକାର କାରଣ ଉଚ୍ଚାରଣଗତ ନୁହେଁ, କିନ୍ତୁ ଧାତୁଗତ । କିନ୍ତୁ ଅନ୍ୟ ଭାଷା ତୁଳନାରେ, ଏପରି ଅସଙ୍ଗତ ବ୍ୟବହାର ଓଡ଼ିଆ ଭାଷାରେ ଅତି ବିରଳ । ଏପରି ବିରଳ ପଦକୁ ନିୟମରୁ ବହିର୍ଭୂତ କରି ମାର୍ଜନା ଦେବାକୁ ହେବ, କାରଣ ପ୍ରତ୍ୟେକ ନିୟମର ଲଙ୍ଘନ ଥିବା ସ୍ୱାଭାବିକ ।

ଅଳ୍ପ କେତେ ପଦ ଅଛି ଯାହାର ଉଚ୍ଚାରଣରେ ଆମ୍ଭେମାନେ ଅଜ୍ଞାତ ଓ ଅଶ୍ରଦ୍ଧାବାନ ହେବାରୁ ସେ ଗୁଡ଼ିକର ସ୍ପଷ୍ଟ ଉଚ୍ଚାରିତ ହୁଏ ନାହିଁ, ତଦ୍ଦ୍ୱାରା ଲେଖାରେ ମଧ୍ୟ ବର୍ଣ୍ଣାଶୁଦ୍ଧି ଘଟେ । ଯଥା— ତନ୍ୱୀ, ଲକ୍ଷ୍ମଣ, ମନ୍ମଥ, ପ୍ରଭାବାନ୍ୱିତ । ଆମ୍ଭେମାନେ ସମୟେ ସମୟେ ମକାର ପରବର୍ତ୍ତୀ ଅଶୁଦ୍ଧ ବକାର ବ୍ୟବହାର କରୁ, କାରଣ ପ୍ରଭାବାନ୍ୱିତ ନକହି ପ୍ରଭାବାନ୍ୱିତ କହୁଥାଉଁ । ସ୍ପଷ୍ଟ ଓ ଶୁଦ୍ଧ ଉଚ୍ଚାରଣ ଓ ତଦନୁସାରେ ବର୍ଣ୍ଣାଶୁଦ୍ଧି ବିଧାନ ଲକ୍ଷଣ ପାଣ୍ଡିତ୍ୟର ସଙ୍କେତ । ସହଜ କରିବା ନିମନ୍ତେ ସେହି ପାଣ୍ଡିତ୍ୟ ବା ଜ୍ଞାନର ମାନଦଣ୍ଡ ତଳକୁ ଖସାଇବା ଉଚିତ ନୁହେଁ ।

ରେଫର ଉଚ୍ଚାରଣ ଅଶିକ୍ଷିତଙ୍କ ପକ୍ଷେ ସହଜ ନୁହେଁ । ଥରେ ଜଣେ ବାଳକ "ଜାହ୍ନବୀ ଏହି ପରିବର୍ତ୍ତନ" ଗୀତଟି ଗାଇଲା ବେଳେ "ପରିବ୍ରତନ" କହିଲା । ଦିନେ ନାହିଁ ଦୁଇଦିନ ନାହିଁ, ଏକ ସପ୍ତାହ ପର୍ଯ୍ୟନ୍ତ ଆମ୍ଭେମାନେ ତାକୁ ଶୁଦ୍ଧ ପଦଟିର ଉଚ୍ଚାରଣ ଶିଖାଇଲୁ । ମାତ୍ର ଆମ୍ଭମାନଙ୍କର ଚେଷ୍ଟା ବିଫଳ ହେଲା । ଅଶିକ୍ଷିତ ବାଳକଟି ସମଗ୍ର ସଙ୍ଗୀତଟି ଆବୃତ୍ତି କଲେ ସୁଦ୍ଧା ପରିବର୍ତ୍ତନ ପଦଟିର ଶୁଦ୍ଧ ଉଚ୍ଚାରଣ କରି ପାରିଲା ନାହିଁ । ସେହିପରି "ଆଶୀର୍ବାଦ" ପଦର ଅବସ୍ଥା । "ଆଶ୍ରୀବାଦ" ପଦର ବହୁଳ ବ୍ୟବହାର ହେତୁ

କେତେଲୋକ ତାହା ଶୁଦ୍ଧ ରୂପେ ଗ୍ରହଣ କରିବାକୁ ଇଚ୍ଛୁକ, କେତ ବ୍ୟକ୍ତି ରେଫଯୁକ୍ତ ପଦର କ୍ଲିଷ୍ଟତା ଦୂର କରିବାକୁ ପାଇ ତାହାକୁ ଭାଙ୍ଗିଦେଇଥାନ୍ତି । ଯଥା:—ସ୍ୱର୍ଗକୁ ସରଗ, ମାର୍କଣ୍ଡକୁ ମାରକଣ୍ଡ, ସର୍ପକୁ ସରପ, ପୂର୍ବକୁ ପୂରୁବ, କହନ୍ତି । ସରଗ, ସରପ, ପୂରୁବ ଏହି ପଦଗୁଡ଼ିକ ପଦ୍ୟରେ ସ୍ୱଚ୍ଛନ୍ଦ ଭାବେ ବ୍ୟବହାର କରାଯାଉଛି । ଏହାର ଉଦ୍ଦେଶ୍ୟ, ପଦର କର୍କଶତା ଦୂରୀକରଣ । ସେ ଯାହା ହେଉ ସାଧୁ ସାହିତ୍ୟରେ ପଦ ମାର୍କଣ୍ଡ, ସର୍ପ ଏବଂ ସ୍ୱର୍ଗ ଏହିପରି ପଦ ଗୁଡ଼ିକର ସ୍ପଷ୍ଟ ଓ ଶୁଦ୍ଧ ଉଚ୍ଚାରଣ ଓ ଲିଖନ ଆବଶ୍ୟକ । ପୁଣି ଶିଷ୍ଟ ବ୍ୟବହାର ବର୍ଜିତ ସେହି ପଦଗୁଡ଼ିକ ଭାଙ୍ଗିଦେବା ନିୟମ ବିରୁଦ୍ଧ ଓ ଅନୁଚିତ ।

ଯେଉଁ ଲୋକେ ରେଫ ଦୂରୀକରଣାର୍ଥେ ସର୍ପକୁ ସରପ କହନ୍ତି ସେମାନେ ଦ୍ରୌପଦୀକୁ ଦୂର୍ପତି ବୋଲି କାହିଁକି ଡାକନ୍ତି ଜାଣିବା ସହଜ ନୁହେଁ । ଓଡ଼ିଆର ଶିଷ୍ଟ ଶବ୍ଦରେ 'ର' ମାତ୍ରା ଯୁକ୍ତ ହେଲେ ଅଶିକ୍ଷିତ ଅନଭ୍ୟସ୍ତ ଜିହ୍ୱା ପକ୍ଷେ ତାହା ଉଚ୍ଚାରଣ କରିବା ଅତିଶୟ କଷ୍ଟସାଧ୍ୟ ହୁଏ । ବହୁ ପରିଶ୍ରମ କରି ଉଚ୍ଚାରଣ କଲାବେଳେ ରେଫର ସ୍ପଷ୍ଟ ଉଚ୍ଚାରଣ ଅଜାଣତ ଭାବେ ହୋଇଯାଏ । ସେ ହେତୁ ଦ୍ରବ୍ୟ, ଦର୍ବରେ ପରିଣତ ହୁଏ ।

ଓଡ଼ିଆ ଭାଷାରେ ଲ ଓ ଳ ଦୁଇଟି ଅକ୍ଷର ଦେଖାଯାଏ । ଦୁଇଟିର ପୃଥକ୍ ବ୍ୟବହାର ହେତୁ ଅନ୍ୟ ଭାଷାଠାରୁ ଆମ୍ଭମାନଙ୍କ ଭାଷା ଅଧିକ ସୁଶ୍ରାବ୍ୟ । ବଙ୍ଗଳା ଭାଷାରେ ମଙ୍ଗଲ ଓ ଉତ୍କଲ, ଓଡ଼ିଆ ଭାଷାରେ ମଙ୍ଗଳ ଓ ଉତ୍କଳ ରୂପେ ଲେଖାଯାଏ ପୁଣି ଉଚ୍ଚାରିତ ହୁଏ । ବ୍ୟର୍ଥ ସଙ୍କୋଚ ଉଦ୍ଦେଶ୍ୟରେ ଳ ଓ ଲକୁ ଏକକରି ଭାଷାର ସୌନ୍ଦର୍ଯ୍ୟ ଓ ସୌକର୍ଯ୍ୟ ଲୋପ କରିବା ଉଚିତ ନୁହେଁ । ବ୍ୟର୍ଥ ସଙ୍କୋଚ

କରି ଲେଖ୍ମୀ ନିଜର ସ୍ୱାସ୍ଥ୍ୟ ସଂପଦ ହରାଇଲା ପରି 'ଳ' ଅକ୍ଷରକୁ ଲୋପ କରି ଭାଷାର ଉଚ୍ଚାରଣ ବିଦର୍ଥ କରିବା ଅନୁଚିତ । ଅକ୍ଷରଟି କେତେ ଲୋକଙ୍କ ନାସିକାରେ ପ୍ରବେଶ କରି 'ନ'ରେ ପରିଣତ ହୋଇଅଛନ୍ତି । ଯଥା—ତେଲରେ ନୁଣ ପକାଇ ନଗାଇବା ଦ୍ୱାରା ନାଲି ହୋଇ ଶୁଖି ଥିବା ନଇଖଣର ଘା' ଭଲ ହୋଇଯାଉଛନ୍ତି । କେତେ ସ୍ଥାନରେ ଲଡ଼ୁଅ ନାମକ ଶ୍ରୀଫଳ ମିଳୁଛି ବୋଲି ଶୁଣାଯାଏ । ଏପରି ପ୍ରାଦେଶିକ ବ୍ୟବହାରଗୁଡ଼ିକ ଭାଷାତତ୍ତ୍ୱମୂଳକ ଗ୍ରନ୍ଥରେ ରହୁ ଚନ୍ତାନାହିଁ, ମାତ୍ର ସେଗୁଡ଼ିକ ନିର୍ଦ୍ଦୋଷ ପଦରୂପେ ସାହିତ୍ୟ ପ୍ରୟାସୀ-ମାନଙ୍କୁ ଶିକ୍ଷାଦାନ କରିବା ଦେଶ ଓ ଜାତି ପକ୍ଷେ ନିତାନ୍ତ ଗର୍ହିତ କାର୍ଯ୍ୟ । ଲକ୍ଷ୍ୟଭେଦ କହିବା ନକହି ସହଜ ଓଡ଼ିଆରେ ଲକ୍ଷକରିବା କହିପାର । ମାତ୍ର ଲକ୍ଷକୁ ନାସିକା ଭିତରେ ପ୍ରବେଶ କରାଇ ନାଖ କହିବାକୁ କୌଣସି ସାହିତ୍ୟିକ ଅନୁମତି ଦେଇ ନପାରେ । ଲକ୍ଷ ଶବ୍ଦ ଶୁଦ୍ଧ, ନାଖ ଅଶୁଦ୍ଧ, ଏହା ବରାବର କହିବାକୁ, ବୁଝାଇବାକୁ ଏବଂ ଲେଖାଇବାକୁ ହେବ ।

ସ୍ତ୍ରୀ ଶବ୍ଦଟି ଉଚ୍ଚାରିତ ହେବା ସହଜ ନୁହେ । ଉକ୍ତ ଶବ୍ଦଟିରେ ଏତେ ଗୁଡ଼ାଏ ଅକ୍ଷର ମିଶ୍ରିତ ହୋଇଛି ଯେ ତାହା ଜିହ୍ୱାରେ ଲେଉଟିବା କଷ୍ଟସାଧ୍ୟ । ତେଣୁ କୌଣସି ଗାଡ଼ିକୁ ଠାଣିବାକୁ ହେଲେ ଦଉଡ଼ି ଲଗାଇଲା ପରି ସେହି ଶବ୍ଦ ଆଗରେ 'ଇ' ପଦଟି ବ୍ୟବହାର କରାଯାଏ । ଇସ୍ତ୍ରୀ କହିବା ଲୋକଙ୍କ ପକ୍ଷେ ସହଜ । କାହିଁକି ସହଜ, ପାଠକେ ସ୍ତ୍ରୀ ଓ ଇସ୍ତ୍ରୀପଦ ଉଚ୍ଚାରଣ କଲେ ଜାଣିପାରିବେ । ଏହି ଅଭ୍ୟାସ ହେତୁ ଇଂରାଜୀ ଉଚ୍ଚାରଣ ମଧ୍ୟ ବିଦ୍ରୂପ ହୁଏ । ଅନେକ ବାଳକ ସ୍କୁଲ ଓ ଷ୍ଟୁଡେଣ୍ଟ କହିବାକୁ ଅସମର୍ଥ ହୋଇ ଇସ୍କୁଲ ଏବଂ ଇଷ୍ଟୁଡେଣ୍ଟ କହନ୍ତି । ଇଂରାଜୀ ବାଳକମାନଙ୍କ ପକ୍ଷେ ଏହି ପଦଗୁଡ଼ିକର ଉଚ୍ଚାରଣ କେତେ କି ସହଜ ମୁଁ ଜାଣେନାହିଁ ।

ମାତ୍ର ଇଂରାଜୀ ପଦ ଦୁଇଟିର ଅଗରେ 'ଇ' ବ୍ୟବହାର କରାଯାଇ କୌଣସି ଇଂରାଜୀ ଅଭିଧାନରେ ମୁଁ ଆଜି ପର୍ଯ୍ୟନ୍ତ ଦେଖି ନାହିଁ । କ୍ଲିଷ୍ଟ ଉଚ୍ଚାରଣକୁ ସାଧନା ଦ୍ୱାରା ସହଜ କରାଯିବା ପ୍ରକୃତ ବିଦ୍ୟାର୍ଥୀର କର୍ତ୍ତବ୍ୟ, ଶବ୍ଦଟିକୁ ବିକୃତ ଓ ବିକଳାଙ୍ଗ କରି ସହଜ କରିବା ଅପକାରକ ।

କଥୋପକଥନ, ବକ୍ତୃତା ପ୍ରଦାନ କିମ୍ବା ଶିକ୍ଷାଦାନ ପୁଣି ଲେଖନ—ଏହି ବିଭିନ୍ନ କାର୍ଯ୍ୟରେ ଭାଷାର ବ୍ୟବହାର କରାଯାଏ । କଥୋପକଥନ ସାଧାରଣତଃ ଶୀଘ୍ର ଶୀଘ୍ର କରାଯାଏ । ଡ଼େରରେ କେହି ପ୍ରଶ୍ନ ପଚାରେ ନାହିଁ କିମ୍ବା ଉତ୍ତର ଦିଏ ନାହିଁ । ତେଣୁ ଶିକ୍ଷିତ ଲୋକଙ୍କ ପକ୍ଷେ ମଧ୍ୟ ପଦର ସ୍ପଷ୍ଟ ଓ ନୀତିଗତ ଉଚ୍ଚାରଣ ଦିଗ ଦୃଷ୍ଟି ଦେବା କଷ୍ଟସାଧ୍ୟ ହୁଏ । ତାହାର ଘରକୁ ତୁମ୍ଭେ ଯାଇଥିଲ ନା କି ତାହାର'କୁ ଯାଇଥିଲ ବୋଲି ସାଧାରଣତଃ ପ୍ରଶ୍ନ ପଚାରାଯାଏ । ସେହିପରି "କୁଠି ଅଇଲ ? ବଇଥ, ସେଇଥି ପାଇଁ" ପ୍ରଭୃତି ବାକ୍ୟର ବ୍ୟବହାର କରାଯାଏ । କଥୋପକଥନ ଭାଷାର ସ୍ଥାନ ସାହିତ୍ୟ କ୍ଷେତ୍ରରେ ନଥାଇ ନାହିଁ । ମାତ୍ର ତାହାର ସ୍ଥାନ ଅଲଗା ଓ ସ୍ୱତନ୍ତ୍ର, ବକ୍ତୃତାରେ କୁହାଯାଇପାରେ, "ତୁମ୍ଭେମାନେ ଆଜି ଯାହାକୁ ଦେଶର ବୀର ରୂପେ ପୂଜା କରୁଅଛ ତାହାକୁ କାଲି ଦେଶଦ୍ରୋହୀ ରୂପେ ଦଣ୍ଡ ଦେଇପାର ।" ମାତ୍ର କଥୋପକଥନ ଭାଷା ହେବ, "ତୁମ୍ଭେମାନେ ଆଜି ଯା'କୁ ବୀର ରୂପେ ପୂଜା କରୁଛ ତାକୁ କାଲି ଦେଶଦ୍ରୋହୀ ରୂପେ ଦଣ୍ଡ ଦେଇପାର ।" ମୁଁ ସେହି କାର୍ଯ୍ୟ କରିବାକୁ ଯାଉନାହିଁ ।" ବୋଲି କୌଣସି ମନ୍ତବ୍ୟ ପତ୍ରରେ ଲେଖାଯାଇପାରେ, ମାତ୍ର କହିଲାବେଳେ କହାଯିବ, "ମୁଁ ସେହି କାର୍ଯ୍ୟ କରିବାକୁ ଯାଉନି" । କଥୋପକଥନର ଭାଷା ପ୍ରବନ୍ଧରେ, କାବ୍ୟରେ, ଉପନ୍ୟାସରେ ଓ ନାଟକରେ ତାହାର ଅଲଗା ସ୍ଥାନ

ରଖାଯିବା ଆବଶ୍ୟକ । ସାହିତ୍ୟକ ଭାଷା ସଙ୍ଗେ ତାହାକୁ ମିଶାଇବା ଦ୍ୱାରା ଉଭୟର କ୍ଷତି ସମ୍ଭବପର ।

ଉଚ୍ଚାରଣ ଓ ଲିଖନର ନୀତିଗତ ସାମଞ୍ଜସ୍ୟ ଭାରତୀୟ ଭାଷାରେ ଥିଲାପରି ଅନ୍ୟତ୍ର ନାହିଁ । ଇଂରାଜୀ ଉଚ୍ଚାରଣର ନିୟମ ଯେତେ ତାହାର ବ୍ୟତିରେକ ସେତେ । କୌଣସି ଗୋଟିଏ ନିୟମ ପାଳନ କରି ଇଂରାଜୀ ଉଚ୍ଚାରଣ ଓ ଲିଖନ ଭ୍ରାନ୍ତିଶୂନ୍ୟ କରିବା ଅସମ୍ଭବ । ଗନ୍ତବ୍ୟ ପଥରେ ଅଶେଷ ପ୍ରତିବନ୍ଧକ ଉପସ୍ଥିତ ହୋଇ ପଥିକକୁ ହଇରାଣ କରୁଅଛନ୍ତି । But, Shut, କହୁ କହୁ put ଆସି ଉପସ୍ଥିତ ହୁଏ, ଲେଖିବାକୁ ହେବ from ମାତ୍ର କହିଲାବେଳେ ପଦଟିକୁ ଟେକିବାକୁ ହେବ । Shamରେ a ର ଉଚ୍ଚାରଣ Shameର a ଉଚ୍ଚାରଣଠାରୁ ଅଲଗା ଏବଂ calm ବେଳକୁ ଆଉ ଗୋଟିଏ ଆକାର ଧାରଣ କରେ । ଏହିପରି ଅସାମଞ୍ଜସ୍ୟ, ହାସ୍ୟାସ୍ପଦ, ନିୟମହୀନତା, ଓ କ୍ରୂର ଭାଷା ନିକୃଷ୍ଟତା ଆମ୍ଭ ଭାଷାରେ ଦୁର୍ଲଭ । ଇଂରାଜୀ ଉଚ୍ଚାରଣ ନିମନ୍ତେ ଗୋଟିଏ ସ୍ୱତନ୍ତ୍ର ବର୍ଣ୍ଣମାଳା phonetics ଉଦ୍ଭାବିତ ହୋଇଅଛି । ଲେଖିବା ନିମନ୍ତେ ଏକପ୍ରକାର ବର୍ଣ୍ଣମାଳା, ପଢ଼ିବା ନିମନ୍ତେ ଅନ୍ୟ ପ୍ରକାର ପୁଣି ଉଚ୍ଚାରଣ କରିବା ନିମନ୍ତେ ତୃତୀୟ ପ୍ରକାର—ଏପରି ଭାବିକି ଇଂରାଜମାନେ ହଇରାଣ ହୁଅନ୍ତି ? ମୂଳ କାରଣ ହେଉଛି ସେମାନଙ୍କର ଭାଷାର ଆରମ୍ଭ ବିଜ୍ଞାନସମ୍ମତ ନୀତିରେ ଗଠିତ ହୋଇ ନଥିଲା । ସେତେବେଳେ ବାଲୁଙ୍ଗା ବଢ଼ିଲା ପରି, ଅରଣ୍ୟରେ ବୃକ୍ଷଲତା ବଢ଼ିଲାପରି, ଇଂରାଜୀ ଭାଷା ବଢ଼ିଲା । ଯେତେବେଳେ ଭାଷା ସଭ୍ୟତା ପ୍ରାପ୍ତହେଲା ସେତେବେଳେ ଅରଣ୍ୟ ବୃକ୍ଷ ଓ ବାଲୁଙ୍ଗା ପରିବର୍ତ୍ତେ କୃଷିଲବ୍ଧ ଶସ୍ୟ ଅଦାୟର ଉପାୟ ଗୃଳଛି । ମାତ୍ର ଆମ୍ଭମାନଙ୍କର ଦେଶର ସଭ୍ୟତା ବହୁ ପ୍ରାଚୀନ । ଭାଷାକୁ ସଂସ୍କୃତ କରିବାର ବିଜ୍ଞାନ ସମ୍ମତ ନୀତି ଉପରେ

ପ୍ରତିଷ୍ଠିତ ଚରିପାଇ ଥିଲା । ସେହି ଭାଷା—ମାତୃଜାର ଦୁହିତାମାନେ ମଧ୍ୟ ସେହି ବଙ୍ଗଳସମ୍ମତ ନୀତି ଅନୁସରଣ କରିବାକୁ ଭୁଲି ନଥିଲେ । ଏଣୁ ଅସ୍ମମାନଙ୍କ ଭାଷାର ଉଚ୍ଚାରଣ ଓ ଲିଖନରେ ବେଶି ପ୍ରଭେଦ ନାହିଁ ।

---

# ସାହିତ୍ୟାଲୋଚନା

[ ବ୍ରହ୍ମପୁର ଟ୍ରେନିଂ ସ୍କୁଲର ଭୂତପୂର୍ବ ପ୍ରଧାନ ଶିକ୍ଷକ ଶ୍ରୀ ବାଳଅ ପାଣିଗ୍ରାହୀଙ୍କ ଦ୍ୱାରା ୯ବ ସାହିତ୍ୟ ସଂଘର ଅଭ୍ୟର୍ଥନା ସମିତି ପକ୍ଷରୁ ପଠିତ ]

୧ । ଓଡ଼ିଆ ସାହିତ୍ୟସଂଘ ପକ୍ଷେ ଆଜି ଗୋଟିଏ ଶୁଭଦିନ । ଆଜି ଆପଣମାନେ ସଂଘର ନିମନ୍ତ୍ରଣ ଗ୍ରହଣ କରି, ଆପଣମାନଙ୍କର ବହୁମୂଲ୍ୟ ସମୟ ବ୍ୟୟକରି ଏଠାକୁ ଆସିଛନ୍ତି । ଆଜିର ଏହି ସାମାନ୍ୟ ଆୟୋଜନରେ ଯେଉଁସବୁ ତ୍ରୁଟି ଲକ୍ଷିତ ହେବ ସେଥି ନିମନ୍ତେ ଆପଣମାନେ ଆପଣମାନଙ୍କ ଉଦାର ଗୁଣରେ କ୍ଷମା କରିବେ ବୋଲି ବିନୀତ ପ୍ରାର୍ଥନା କରୁଅଛୁ ।

୨ । ସାହିତ୍ୟର ଯଥ ସାମାନ୍ୟ ସେବା ଉଦ୍ଦେଶ୍ୟରେ ଆଜକୁ ପ୍ରାୟ ତିନି ବର୍ଷ ହେଲା ଏହି ସ୍ଥାନରେ ଏହି ସଂଘ ସ୍ଥାପିତ ହୋଇଅଛି । ଗୋଟିଏ କ୍ଷୁଦ୍ର ପାଠାଗାର ଓ କତିପୟ ସାମୟିକ ସାହିତ୍ୟ ସମ୍ବନ୍ଧୀୟ ସଭାଛଡ଼ା ଆମ୍ଭେମାନେ ବେଶୀ କିଛି ଏହି ସମୟ ଭିତରେ କରିପାରି ନାହୁଁ । ପାଠାଗାରର ଅଭିବୃଦ୍ଧି, ସାହିତ୍ୟ ଆଲୋଚନା ନିମନ୍ତେ ସଭା ସମିତିର ସଂଖ୍ୟା ବୃଦ୍ଧି ଓ ସଂଘ ପକ୍ଷରୁ ଗୋଟିଏ ମୁଖପତ୍ର ପ୍ରକାଶ ବ୍ୟତୀତ ଆମ୍ଭମାନଙ୍କର ଅଧିକ ଆକାଂକ୍ଷା ନାହିଁ । ସ୍ଥାନୀୟ ଇତିହାସର ଗବେଷଣା ନିମନ୍ତେ ଛତ୍ରପୁର ଓ ପାର୍ଶ୍ୱବର୍ତ୍ତୀ ସ୍ଥାନମାନଙ୍କରେ ଯଥେଷ୍ଟ ଉପାଦାନ ପଡ଼ି ରହିଛି । ଏହି ଉପାଦାନଗୁଡ଼ିକର ସଦ୍‌ବ୍ୟବହାର କରି ଯାଇ ପାରିଲେ ପ୍ରାଚୀନ ଓ ମଧ୍ୟଯୁଗ ପୂର୍ବ ଆଧୁନିକ ଯୁଗ ସମ୍ବନ୍ଧେ ବିଭିନ୍ନ ଐତିହାସିକ ତତ୍ତ୍ୱ ଆବିଷ୍କୃତ ହୋଇ ପାରିବ । ମାତ୍ର ଏହି ବିଷୟରେ ସ୍ଥାନୀୟ କୌଣସି ବ୍ୟକ୍ତି ଆବଶ୍ୟକୀୟ ଶ୍ରଦ୍ଧା ନେବାର ଦେଖାଯାଉନାହିଁ । ଐତିହାସିକ ଗବେଷଣା-ପ୍ରବୃତ୍ତିକୁ ଆବଶ୍ୟକୀୟ ଉତ୍ସାହ ଦେଇ ସ୍ଥାନୀୟ ଇତିହାସର ପ୍ରକୃତ ରୂପ ଦେଖାଇ ପାରିଲେ ଆମ୍ଭର ଏହି ସଂଘ ଜନସାଧାରଣଙ୍କର

ଅଧିକ ଲାଭ କରି ପାରିବ । ପୁଣି ସ୍ଥାନୀୟ ପ୍ରାଧାନ୍ୟ ଜାଣି ଜନସାଧାରଣ ସେମାନଙ୍କର ସାମାଜିକ କାର୍ଯ୍ୟରେ ଯଥେଷ୍ଟ ଉତ୍ସାହ ଲାଭ କରିପାରିବେ । ଏହି ଦିଗରେ ମଧ୍ୟ କାର୍ଯ୍ୟ କରିବାକୁ ଆମ୍ଭମାନଙ୍କର ଇଚ୍ଛା ଅଛି । ଆଶାକରୁଁ କାଳକ୍ରମେ ଏହି ଇଚ୍ଛାକୁ କାର୍ଯ୍ୟରେ ପରିଣତ କରିବାକୁ ସମର୍ଥ ହେବୁଁ ।

୩ । ଓଡ଼ିଆ ସାହିତ୍ୟ—ବଜାରରେ ଦିନକୁ ଦିନ ବହିର ସଂଖ୍ୟା ବଢ଼ିବାରେ ଲାଗିଛି । ଏଥିରୁ ଜଣାଯାଏ ଯେ ଦେଶରେ ଲେଖକ ଓ ପାଠକଙ୍କ ସଂଖ୍ୟା ବୃଦ୍ଧି ପାଉଛି । ଶିକ୍ଷାର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ଏହି ପାଠକ ସଂଖ୍ୟାର ବୃଦ୍ଧି ସ୍ୱାଭାବିକ ଅଟେ, ମାତ୍ର ଅନ୍ୟଦେଶ ତୁଳନାରେ ଆମ୍ଭମାନଙ୍କର ମୁଦ୍ରିତ ବହି ଓ ପାଠକ ସଂଖ୍ୟା ଯେ ନ୍ୟୂନ ଅଟେ ଏହା ବୁଝାଇଦେବା ଅନାବଶ୍ୟକ । ତେଣୁ ଏହି ସଂଖ୍ୟା ବୃଦ୍ଧିରେ କେବଳ ଆମ୍ଭେମାନେ ତୃପ୍ତିଲାଭ କରିବା ଉଚିତ ହେଉନାହିଁ । ସ୍ୱାଧୀନ ଦେଶର ଚରମ ଲକ୍ଷ୍ୟ ସାର୍ବଜନୀନ ଶିକ୍ଷାପ୍ରସାର । ଏ ଦେଶର ସକଳ ନରନାରୀ ଶିକ୍ଷିତ ହୋଇ ଯେଉଁ ସଂଖ୍ୟାରେ ବହି ଖୋଜିବେ ସେହି ସଂଖ୍ୟକ ବହି ପ୍ରକାଶ କରିବା ହେବ ଆମ୍ଭମାନଙ୍କର ଲକ୍ଷ୍ୟ । ମାତ୍ର ସାହିତ୍ୟ ବଜାରରେ ବହିର ସଂଖ୍ୟାହିଁ ଏକମାତ୍ର ବିଚାର୍ଯ୍ୟ ନୁହେଁ । ବହିସବୁର ସଂଖ୍ୟା ସଙ୍ଗେ ସଙ୍ଗେ ବହିସବୁର ଗୁଣଗତ ବୃଦ୍ଧି ହେବା ଆବଶ୍ୟକ । Washington Irving କହିଛନ୍ତି "In Literature as in finance much paper and much poverty may co-exist", ଜଣେ ଲେଖକ ତାଙ୍କର ଚରମ ଅବସ୍ଥାରେ କହି ପାରନ୍ତି "ମୁଁ ସହସ୍ର ପୃଷ୍ଠାବ୍ୟାପୀ ଗଦ୍ୟ ପଦ୍ୟ ଲେଖି ମୁଦ୍ରା ଲେଖକଙ୍କଠାରୁ ଅଧିକ କମ୍ପା ଉତ୍ସାହ ପାଇଲି ନାହିଁ ।" ମାତ୍ର ବିଖ୍ୟାତ ଐତିହାସିକ ଗୀବନ ସାହେବ ତାଙ୍କ ସମଗ୍ର ଜୀବନରେ

ଗୋଟିଏ ମାତ୍ର ବହି ଲେଖିଥିଲେ "Decline and fall of the Roman Empire" ଓ ସେହି ବହିଟି ତାଙ୍କୁ ଇତିହାସ ଓ ସାହିତ୍ୟ କ୍ଷେତ୍ରରେ ଅମର କରି ରଖିଅଛି । ଓଡ଼ିଆ ଲେଖକମାନେ ସେମାନଙ୍କର ଲେଖା ଲେଖିଲା ବେଳେ ବଜାରର ଚାହିଦା ସଙ୍ଗେ ସଙ୍ଗେ ସମଗ୍ର ଜାତି ପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ସେମାନେ ଯେଉଁ ବହି ଲେଖୁଛନ୍ତି ସେଗୁଡ଼ିକ ସବୁକାଳ ପାଇଁ ନା କେବଳ ଯାତ୍ରୀଙ୍କର ସମୟ କଟାଇବା ପାଇଁ ? ଯାହା ଲେଖାଯିବ ତାହା ବହି ହେବ ସତ, ମାତ୍ର ଲେଖିଦେଲା ମାତ୍ରେ ତାହା ସାହିତ୍ୟ ହୋଇ ନପାରେ । ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପର ଲେଖା ଆମ ଦେଶରେ ଖୁବ୍ ଜୋରରେ ଚାଲିଛି । ସ୍ୱର୍ଗୀୟ ଫକୀର ମୋହନ ଏହି ଦିଗରେ ବାଟ ଦେଖାଇଥିଲେ । ମାତ୍ର ତାଙ୍କର ଅନୁସରଣ କାରୀମାନେ କେତେଦୂର ତାଙ୍କ ଆଦର୍ଶକୁ ସମ୍ମୁଖରେ ରଖୁଛନ୍ତି ଭାବିବାର କଥା । ଓଡ଼ିଆ ସମାଜର ଚିତ୍ର ଫକୀର ମୋହନଙ୍କ ଲେଖାରୁ ଯେପରି ଜାଣିହୁଏ, ଆଜିକାଲିର ଅନେକ ଗଳ୍ପ ଉପନ୍ୟାସରୁ ସେପରି ଜାଣିହୁଏ ନାହିଁ । ନୀତି ଶିଖିବା ପାଇଁ ପରୋକ୍ଷରେ ବା ପ୍ରତ୍ୟକ୍ଷରେ ଆଧୁନିକ ଉପନ୍ୟାସ ଓ ଗଳ୍ପଗୁଡ଼ିକରେ କିଛି ଥିଲାପରି ମନେ ହୁଏ ନାହିଁ । ଭ୍ରୂଣହତ୍ୟା, ଆତ୍ମହତ୍ୟା ଓ ଅନ୍ୟାନ୍ୟ ପ୍ରକାର ହତ୍ୟା, ପାପ ପ୍ରେମ ଇତ୍ୟାଦି ଅସାର କଳ୍ପନାରେ ସେଗୁଡ଼ିକ ପୂର୍ଣ୍ଣ ହୋଇ ପାଠକର ମନକୁ କଳୁଷିତ କରନ୍ତି । ଏହା ବୋଲି ଯେ ସବୁ ଆଧୁନିକ ଉପନ୍ୟାସ ଓ ଗଳ୍ପ ଏହି ଧରଣର, ଏହା ଆମ୍ଭମାନଙ୍କର ଅଭିମତ ନୁହେଁ । ଲେଖକ ମାତ୍ରେ ଉତ୍ତମ ଉପନ୍ୟାସଗୁଡ଼ିକୁ ଆଦର୍ଶ କଲେ ଓଡ଼ିଆ ସାହିତ୍ୟ ବଜାରରୁ ଅସାର ବହିର ସଂଖ୍ୟା କମିଯିବ ଓ ଲେଖକମାନେ ଦେଶର ଜାତିରୁ ନୀତି ଓ ଚରିତ୍ରକୁ ସତ୍ ପଥରେ ଚଳାଇ ପାରିବେ । ଔପନ୍ୟାସିକ

ଓ ଗଳ୍ପ ଲେଖକ ଶରତ୍‌ଚନ୍ଦ୍ର ପରି ଜଣେ କଳାବିତ୍ । ଉପନ୍ୟାସ ବା କଥାରେ ମଧ୍ୟ ତାଙ୍କ କଳା ଦେଖାଇବାର ଢେର ସୁଯୋଗ ରହିଅଛି । ହାସ୍ୟ, କୌତୁକ, ବ୍ୟଙ୍ଗ, ବକ୍ରୋକ୍ତିକୁ ଏକାବେଳକେ ବାଦ ଦେବାକୁ ତାଙ୍କୁ କେହି କହି ପାରିବେ ନାହିଁ । ଯଥା ସ୍ଥାନରେ ସେଗୁଡ଼ିକ ରହିଲେ ଲେଖାର ସୌନ୍ଦର୍ଯ୍ୟ ବଢ଼ିବ । ଔପନ୍ୟାସିକ ପାଠକମାନଙ୍କର ଶ୍ରଦ୍ଧା ବାନ୍ଧିରଖିବାକୁ ଯଦି ଅଧିକ ମାତ୍ରାରେ ଏହିସବୁ ଉପର ବ୍ୟବହାର କରନ୍ତି ବା ଅତି ଚମତ୍କାରପ୍ରଦ ଘଟଣାବଳୀରେ ଲେଖାଟିକୁ ପୂର୍ଣ୍ଣ କରନ୍ତି, ତେବେ ପାଠକ ଶ୍ରେଣୀ ବିରକ୍ତ ହେବା ସ୍ୱାଭାବିକ ମାତ୍ର । କେତେ ଉପନ୍ୟାସରେ (ଆକସ୍ମିକ ଘଟଣା) **Chance coincidence** ର ବହୁଳ ବ୍ୟବହାର ମଧ୍ୟ କଥାବସ୍ତୁକୁ ଅସ୍ୱାଭାବିକ କରିଦିଏ । ଏହିସବୁ ଦୋଷରୁ ମୁକ୍ତ ହେଲେ ଆମ୍ଭମାନଙ୍କର ଗଳ୍ପ ଓ ଉପନ୍ୟାସ ଉନ୍ନତ ରୁଚିର ଯୋଗ୍ୟ ହେବ ।

୪ । ଗଳ୍ପ, ଉପନ୍ୟାସ କିମ୍ବା କାବ୍ୟ ନାଟକରେହିଁ ଜାତିର ଜ୍ଞାନ ସମ୍ପଦକୁ ଆବଦ୍ଧ କରିପାରି ନପାରେ । ପରାଧୀନ ଜାତିର ମାତୃଭାଷା ଅପେକ୍ଷା ସ୍ୱାଧୀନ ଜାତିର ମାତୃଭାଷାର ପରିସର ଖୁବ୍ ବେଶୀ । ଆମ୍ଭେମାନେ ଦାସତ୍ୱ ନିଗଡ଼ରେ ଆବଦ୍ଧ ହୋଇ ଅଜାଣେ ଶୋଇଥିଲାବେଳେ ସ୍ୱପ୍ନ ଦେଖିଲା ପରି, କେବଳ ଆମୋଦପ୍ରମୋଦ ପାଇଁ ଆମ୍ଭମାନଙ୍କର ସାହିତ୍ୟ ବା ଭାଷାକୁ ବ୍ୟବହାର କରୁଥିଲୁ । ମାତ୍ର ବର୍ତ୍ତମାନ ଅବସ୍ଥା ପରିବର୍ତ୍ତିତ ହୋଇଅଛି । ପୂର୍ବର ଅତି ସେହି ହୀନ ମନୋଭାବ ଆମ୍ଭମାନଙ୍କର ନାହିଁ । ଜାତୀୟ ସ୍ୱାଧୀନତାର ସମକକ୍ଷ ହେଲା ଭଳି ଆମ୍ଭମାନଙ୍କ ଭାଷାକୁ ପ୍ରସ୍ତୁତ କରିବାକୁ ହେବ । ଇଂରାଜ ରାଜତ୍ୱର ତିରୋଧାନ ସଙ୍ଗେ ସଙ୍ଗେ ଇଂରାଜୀ ଭାଷାର ପ୍ରାଧାନ୍ୟ ଆଉ ଏ ଦେଶରେ ରହି ନପାରେ । ପ୍ରଜାତନ୍ତ୍ରକୁ କାର୍ଯ୍ୟକାରୀ କରିବା ନିମନ୍ତେ ଇଂରାଜୀ ଭାଷାର ସ୍ଥାନ ବର୍ତ୍ତମାନ

ମାତୃଭାଷା ଗ୍ରହଣ କରିବ । ଓଡ଼ିଶାରେ ନ ହେଲେ ମଧ୍ୟ, ଭାରତର ଅନ୍ୟାନ୍ୟ ପ୍ରଦେଶରେ ନିଃସନ୍ଦେହ ଭାବେ ଏହି ସମସ୍ୟାର ସମାଧାନ କରିପାରୁଅଛନ୍ତି । ବଙ୍ଗ ଦେଶର ପ୍ରାଦେଶିକ ଭାଷା ହୋଇଛନ୍ତି ବଙ୍ଗ ଭାଷା ଓ ଯୁକ୍ତ ପ୍ରଦେଶର ଏକମାତ୍ର ଭାଷା କରାଯାଇଛନ୍ତି ହିନ୍ଦୀ । ଅନ୍ୟାନ୍ୟ ଏକ ଭାଷାଭାଷୀ ପ୍ରଦେଶ ବା ଅଞ୍ଚଳଗୁଡ଼ିକରେ ଏହି ଆଦର୍ଶ ଅନୁସୃତ ହୋଇସାରିଲାଣି । କେବଳ ସରକାରୀ କାର୍ଯ୍ୟ ମାତୃଭାଷାରେ ଚାଳିତ ହେଲେ ଯଥେଷ୍ଟ ନୁହେଁ । ଯେତେ ସବୁ ଜ୍ଞାନସ୍ତରର ଚିନ୍ତା, ଯେତେ ସବୁ ଜ୍ଞାନସ୍ତରର ବିଷୟ ଅଛି, ସେ ସବୁ ଜାଣିବାକୁ ମାତୃଭାଷା ଆମ୍ଭମାନଙ୍କର ଏକମାତ୍ର ଅବଲମ୍ବନ ହେବା ଆବଶ୍ୟକ । କେବଳ ଗଳ୍ପ, ଉପନ୍ୟାସ ଲେଖା ଦ୍ୱାରା ଏହି ଉଦ୍ଦେଶ୍ୟ ସିଦ୍ଧ ହୋଇ ପାରିବ ନାହିଁ । ବିଜ୍ଞାନ, ଇତିହାସ, ଦର୍ଶନ, ରାଜନୀତି, ଅର୍ଥନୀତି ପ୍ରଭୃତି ବିଷୟ ମାତୃଭାଷାରେ ପ୍ରକାଶିତ ହେବା ଆବଶ୍ୟକ । ଏହି ଗୁରୁ କାର୍ଯ୍ୟ ବ୍ୟକ୍ତିଗତ ଚେଷ୍ଟା ଉପରେ ଛାଡ଼ିଦେଲେ ସମ୍ପୂର୍ଣ୍ଣ ହେବାକୁ ବହୁଯୁଗ ବିତିଯିବ । ଏହି କାର୍ଯ୍ୟ ଜାତୀୟ ସରକାର ବହନ କରିବାକୁ ହେବ । ବଙ୍ଗ ସରକାର ପରିଭାଷା ସଂସଦ ନାମକ ଏକ ଅନୁଷ୍ଠାନ ଗଢ଼ିସାରିଲେଣି ଓ ଅନ୍ୟାନ୍ୟ ପ୍ରାଦେଶିକ ସରକାରର ସହଯୋଗ ସେ ଚାହିଁଛନ୍ତି । ଏଥିରେ ସହଯୋଗ ଦେଇ ବା ନଦେଇ ଏହି କାର୍ଯ୍ୟରେ ହସ୍ତକ୍ଷେପ କରି ଓଡ଼ିଶା ସରକାର ଓଡ଼ିଆ ଭାଷାକୁ ଯୁଗୋପଯୋଗୀ ନକଲେ ତାଙ୍କର କର୍ତ୍ତବ୍ୟରେ ଅକ୍ଷମଣୀୟ ଅବହେଳା ହେବ । ଦେଶରେ ଲେଖକ, ପଣ୍ଡିତ ଓ ଗବେଷକଙ୍କର ଅଭାବ ନାହିଁ । ସେମାନଙ୍କୁ ଯଥେଷ୍ଟ ଉତ୍ସାହ ପ୍ରଦାନ କରି ଆବଶ୍ୟକୀୟ ଧନ ବ୍ୟୟ କରି ଓଡ଼ିଆ ଭାଷାକୁ ଜାତୀୟ ସରକାର ସର୍ବାଙ୍ଗ ସୁନ୍ଦର ଓ ବଳିଷ୍ଠ କରିବେ ବୋଲି ଆମ୍ଭେମାନେ ଆଶାକରୁଁ । ଇଂରାଜୀ ଯିବ । ବିଭିନ୍ନ ବିଷୟରେ ପଢ଼ିବାକୁ ଓ ଜ୍ଞାନ ପାଇବାକୁ ଓଡ଼ିଆରେ ବହି ମିଳିବ

ନାହିଁ । ଏପରି ଯଦି ଅପର ଅବସ୍ଥା ହୁଏ, ତେବେ ତାହାର ସଂସ୍କୃତି ନଷ୍ଟ ହୋଇଯିବ ଓ ମୂର୍ଚ୍ଛା-ଦାନରେ ଆମ୍ଭମାନଙ୍କୁ ରଖିବାକୁ ହେବ । ଭାଷାକୁ ବଳିଷ୍ଠ କରିବାରେ ସରକାରଙ୍କ ପର ଆମ୍ଭ ବିଶ୍ୱବିଦ୍ୟାଳୟର ଗୁରୁଦାୟିତ୍ୱ ରହିଅଛି । ମାତ୍ର ଏଥିପାଇଁ ମାମୁଲି ଧରଣର ପରୀକ୍ଷା ଚଳାଇବା ବ୍ୟତୀତ ଏହି ଅନୁଷ୍ଠାନ, ଭାଷାର ଅଭିବୃଦ୍ଧି, ଜ୍ଞାନର ପ୍ରସାର ଓ ସଂସ୍କୃତି ରକ୍ଷା ସମ୍ବନ୍ଧେ ବିଶେଷ ଭାବେ ମନ ଧ୍ୟାନ ଦେଉଥିବାର ଜଣା ଯାଉନାହିଁ । ଜଣା ବାହୁଲ୍ୟ ସମସ୍ୟା ସମାଧାନରେ ଓ ତତ୍ଜନିତ ଅନାବଶ୍ୟକ ଅସୁବିଧାରେ ପଡ଼ି ତାହାର ବହୁମୂଲ୍ୟ ସମୟ ନଷ୍ଟ ହୋଇଛି । ଏପରି ଗୋଟିଏ ଏକଭାଷୀ ଅଞ୍ଚଳକୁ ଧ୍ୟାନରେ ରଖି, ବିଶ୍ୱବିଦ୍ୟାଳୟ ମାଟ୍ରିକୁଲେସନ୍‌ର ଦୁଇଟି ଓଡ଼ିଆ ପାଠ୍ୟପୁସ୍ତକ ସଂକଳନ କରିବା ବ୍ୟତୀତ ଅନ୍ୟ କିଛି କରିପାରି ନାହିଁ । ଏଥିପାଇଁ ଆମ୍ଭେମାନେ କେତେଖଣ୍ଡ କାବ୍ୟ ଉପନ୍ୟାସ ଛାଡ଼ିଦେଲେ କୌଣସି ବିଷୟରେ Authoritative (ପ୍ରାମାଣ୍ୟ) ଗ୍ରନ୍ଥ ରଚନା କରିନାହୁଁ କହିଲେ ଚଳେ । ଗୀତା ପ୍ରବେଶ, ପରମାର୍ଥ, ପତ୍ୟୋନିଧି, ପ୍ରାଚୀନ ଉତ୍କଳ ଓ ଓଡ଼ିଆ ଭାଷାତତ୍ତ୍ୱ ପରି ଉପାଦେୟ ତଥ୍ୟପୂର୍ଣ୍ଣ ବହି ଓଡ଼ିଆ ଭାଷାରେ ଅତି ଅଳ୍ପ ଅଛି । ଓଡ଼ିଆ ଲେଖକମାନେ ସେମାନଙ୍କର ଲେଖାଗୁଡ଼ିକୁ ବଳିଷ୍ଠ କରିବାକୁ ହେଲେ କିମ୍ବା ସେମାନଙ୍କର ଲେଖାର ସତ୍ୟତାକୁ ପ୍ରମାଣ କରିବାକୁ ହେଲେ ଇଂରାଜି କିମ୍ବା ସଂସ୍କୃତ ଗ୍ରନ୍ଥରୁ ଉଦ୍ଧୃତ ବାକ୍ୟ ବା ଶ୍ଳୋକ ବ୍ୟବହାର କରନ୍ତି । କାରଣ ସେପରି ଉଦ୍ଧାର କରିବାକୁ ସେମାନେ ଓଡ଼ିଆ ସାହିତ୍ୟରେ ଯଥେଷ୍ଟ ଅବକାଶ ଉପକରଣ ପାଆନ୍ତିନାହିଁ । ବିଜ୍ଞାନ ହେଉ ବା ଅଳଂକାର ହେଉ କୌଣସି ବିଷୟରେ ଓଡ଼ିଆ ଭାଷାରେ ବଡ଼ ଧରଣର ବହି ଲେଖା ହୋଇନାହିଁ । ରାଜନୀତି, ସମାଜନୀତି, ଉଚ୍ଚ ଗଣିତ ଓ ଜ୍ୟୋତିଷ ପୁଣି ଭାରତୀୟ

ତା ସ୍ୱଦେଶୀୟ ଦର୍ଶନ ଓ ଭାରତ ଦେଶର ଅମୂଲ୍ୟ ଇତିହାସ ଓ ଭୂଗୋଳ ସମ୍ବନ୍ଧ ଜାଣିବାକୁ ହେଲେ ଅନ୍ୟ ଭାଷାର ଆଶ୍ରୟ ନେବା ଛଡ଼ା ଆମ୍ଭମାନଙ୍କର ଅନ୍ୟ ଗତି ନାହିଁ । ସ୍ୱାଧୀନ ଦେଶରେ ମାତୃଭାଷାକୁ ଏତେ ଦୁର୍ବଳ କରି ରଖିଲେ ଚଳିବ ନାହିଁ । ଅତଏବ, ଏହି ସବୁ ଅଭାବଗୁଡ଼ିକ ଦୂର କରିବାକୁ ଜାତି ତଥା ତାହାର ସରକାର ତତ୍ପର ହେବା ଉଚିତ ।

୫ । ଇଂରାଜୀ କିମ୍ବା ଅନ୍ୟ କୌଣସି ଇତର ଭାଷାକୁ ପ୍ରାଧାନ୍ୟ ନଦେଇ ମାତୃଭାଷାର ଅଭିବୃଦ୍ଧି ସାଧନ କରିବାର ଅର୍ଥ ଅନ୍ୟ ଭାଷା କିମ୍ବା ଅନ୍ୟ ସଂସ୍କୃତି ପ୍ରତି ତାଚ୍ଛଲ୍ୟ ପ୍ରଦର୍ଶନ ନୁହେଁ । ଦେଶ କିମ୍ବା ଜାତିର ସୀମା ଥାଇପାରେ । ମାତ୍ର ଜ୍ଞାନର ପରିଧି ବିଶ୍ୱବ୍ୟାପୀ । ଦୁଇଶହ ବର୍ଷ ଇଂରାଜୀ ଭାଷାର ପ୍ରାଧାନ୍ୟ ହେତୁ ଆମ୍ଭମାନଙ୍କ ମାତୃଭାଷା ଦୈନ୍ୟ ଲାଭ କରିଅଛି ସତ୍ୟ, ମାତ୍ର ସେହି ଭାଷାରେହିଁ ଆଜିଯାଏଁ ଆମ୍ଭମାନଙ୍କର ଜ୍ଞାନ ଭଣ୍ଡାର ପୂର୍ଣ୍ଣ କରିବାର ଏକମାତ୍ର ସୁବିଧା ଥିଲା । ଏବେ ଇଂରାଜୀ ଭାଷା ପରିବର୍ତ୍ତେ ଓଡ଼ିଆ ଭାଷାକୁ ସେହି ପ୍ରାଧାନ୍ୟ ଦେଲାପରେ ଜ୍ଞାନଲାଭର ସୁବିଧା ବନ୍ଦ କରିଦେବା ଯୁକ୍ତିର କାର୍ଯ୍ୟ ହେବନାହିଁ । ଇଂଲଣ୍ଡର ପାଠକ-ମାନେ ଇଚ୍ଛାକଲେ ଅନ୍ୟ ଦେଶର ଖ୍ୟାତନାମା ଲେଖକମାନଙ୍କର ଭାବ ପାଇବାକୁ ଅସମର୍ଥ ହୁଅନ୍ତି ନାହିଁ । ଇଂରାଜୀ ପାଠକକୁ ବାଇବେଲ୍ ଜାଣିବାକୁ ହିବ୍ରୁ ଭାଷା ଶିଖିବାକୁ ହୁଏ ନାହିଁ, ହୋମର୍ ପଢ଼ିବାକୁ ଗ୍ରୀକ୍‌ଭାଷା ଅଧ୍ୟୟନ କରିବା ଆବଶ୍ୟକ ହୁଏ ନାହିଁ । ସେ ଜର୍ମାନୀ ଲେଖକ ଗେଟେଙ୍କ ଫଷ୍ଟ୍, ଫରାସୀ ଔପନ୍ୟାସିକ ଭିକ୍ଟର୍ ହ୍ୟୁଗୋଙ୍କ ଲେମିଜରେବଲ୍ କିମ୍ବା ଟଲଷ୍ଟୟଙ୍କ ଗଳ୍ପଗୁଚ୍ଛ ବା ପ୍ରବନ୍ଧ ଓ ବେଦ ଉପନିଷଦ ଇତ୍ୟାଦି ଭାରତୀୟ ଗ୍ରନ୍ଥ, ପଢ଼େ ନିଜ ମାତୃଭାଷାରେ । ଅନୁବାଦ ହେତୁ ଏହି ସୁବିଧା ସେମାନଙ୍କର ରହିଅଛି । ବଳରାମ

ଦାସ, ଜଗନ୍ନାଥ ଦାସ ଓ କୃଷ୍ଣଚରଣ ପଟ୍ଟନାୟକ ସଂସ୍କୃତ ପୁରାଣଗୁଡ଼ିକ ମାତୃଭାଷାରେ ଅନୁବାଦ କରି ଯେଉଁ ପନ୍ଥା ଜାତିକୁ ଦେଖାଇଥିଲେ ତାହା ପରବର୍ତ୍ତୀ ଲେଖକମାନେ ଅନୁସରଣ କରିନାହାନ୍ତି । ତେଣୁ ବେଦ, ଉପନିଷଦ ଆଦି ଧର୍ମଗ୍ରନ୍ଥ, ଅର୍ଥ, ଶାସ୍ତ୍ର, ଶୁକ୍ରନୀତି, ଇତ୍ୟାଦି ଅର୍ଥନୀତି ଓ ରାଜନୀତି ସମ୍ବନ୍ଧୀୟ ମୂଳଗ୍ରନ୍ଥ କିମ୍ବା ଐତିହାସିକ ଉପାଦାନ ସମ୍ବଳିତ ଅଶୋକଲିପି, ଲଳିତ ବିସ୍ତର, ଦୀପ ଓ ମହାବଂଶ ପ୍ରଭୃତି ପାଲିଗ୍ରନ୍ଥ ଓଡ଼ିଆ ପାଠକ ପକ୍ଷେ ଅନ୍ୟ ଭାଷା ନ ଜାଣିଲେ ଜାଣିବାର ଉପାୟ ନାହିଁ । ଆଜି ପର୍ଯ୍ୟନ୍ତ କାଳିଦାସ, ଭବଭୂତି ଇତ୍ୟାଦି କବି ଓ ନାଟ୍ୟକାରଙ୍କ ନାଟକଗ୍ରନ୍ଥଗୁଡ଼ିକର ଉତ୍କୃଷ୍ଟ ଅନୁବାଦ ଓଡ଼ିଆ ଭାଷାରେ କରାଯାଇ ନାହିଁ । କୌଣସି ଗବେଷଣାମୂଳକ ଆଲୋଚନା କରିବାକୁ ହେଲେ ପାଠକ ପକ୍ଷେ ଅନ୍ୟ ଭାଷାର ଆଶ୍ରୟ ନ ନେଲେ ନ ଚଳେ । ଏପରି ଅନୁବାଦ ଉନ୍ନତ ଭାବେ କରିବାକୁ ହେଲେ ଧନର ଆବଶ୍ୟକତା ଖୁବ୍ ବେଶୀ । ଜାତୀୟ ସରକାରଙ୍କ ବିନା ଉତ୍ସାହ ଓ ପୃଷ୍ଠପୋଷକତାରେ ଏହା ହେବା ଏହି ଦେଶରେ ଅସମ୍ଭବ । ଓଡ଼ିଆ ଭାଷାକୁ ଆମ୍ଭେମାନେ ଏପରି କରିବାକୁ ହେବ ଯେ, ଜଗତର ଜ୍ଞାନ ଆହରଣରେ ପୁସ୍ତକ ନାହିଁ ବୋଲି ଓଡ଼ିଆ ଅନୁସନ୍ଧିତ୍ସୁ ହତାଶ କିମ୍ବା ହତୋତ୍ସାହ ହେବ ନାହିଁ ।

---

—ସ ମା ପ୍ତ—

ବ୍ରହ୍ମପୁର, ରଥ ପ୍ରେସରେ ଶ୍ରୀ ରାମଚନ୍ଦ୍ର ରଥଙ୍କଦ୍ୱାରା ମୁଦ୍ରିତ । ୧୯୫୬